# ଦାରିଦ୍ର୍ୟ ଅତୀତର କଥା ହେଉ




'କଥା ରଖିବା ସରକାର' ଅଭିଯାନ

ଓଡ଼ିଶା

| | |
|---|---|
| ଆଲେଖ୍ୟ | ନିର୍ଝରିଣୀ ରଥ |
| ସଂପାଦନା | ତପନ ପାଢ଼ୀ, ସନ୍ଦୀପ ସାହୁ |
| ଅଳଙ୍କରଣ | ରାମକୃଷ୍ଣ ମହାରଣା |
| ପ୍ରକାଶ କାଳ | ୭, ଜୁଲାଇ, ୨୦୦୭ |
| ମୁଦ୍ରଣ | ପରଫେକ୍ଟ ପ୍ରିଣ୍ଟ ଆଣ୍ଡ ଗ୍ରାଫିକ୍ସ ପ୍ରା. ଲିଃ, ମଞ୍ଚେଶ୍ୱର, ଭୁବନେଶ୍ୱର |
| ପ୍ରକାଶକ | କଥା ରଖିବା ସରକାର ଅଭିଯାନ, ଓଡ଼ିଶା<br>ମାର୍ଫତ : ଆର୍.ସି.ଡି.ସି. - ସେଣ୍ଟର ଫର୍ ୱାଟର ଫର୍ ଲାଇଫ,<br>୪୨୪, ଶହିଦ ନଗର, ଭୁବନେଶ୍ୱର - ୭୫୧ ୦୦୭, ଓଡିଶା, ଭାରତ,<br>ଫୋନ - ୯୧-୬୭୪-୨୫୪୭୫୮୫, ୨୫୪୭୮୯୭ |

# ମୁଖବନ୍ଧ

୨୦୦୦ ମସିହା ସେପ୍ଟେମ୍ବର ମାସରେ ନୂତନ ସହସ୍ରାବ୍ଦର ଆଗମନର ଅବ୍ୟବହିତ ପୂର୍ବରୁ ୧୮୯ଟି ଦେଶର ରାଷ୍ଟ୍ରମୁଖ୍ୟମାନେ ସଂକଳ୍ପ ଗ୍ରହଣ କରିଥିଲେ ଏକ କ୍ଷୁଧା, ଦାରିଦ୍ର୍ୟ, ରୋଗ ବିଷମତାମୁକ୍ତ ପୃଥିବୀ ଗଢ଼ିବାକୁ । ଏହି ସଂକଳ୍ପର ଫଳଶ୍ରୁତି-ସହସ୍ରାବ୍ଦର ଲକ୍ଷ୍ୟ । ବିଶ୍ୱର ରାଷ୍ଟ୍ର ସମୂହ ୨୦୧୫ ସୁଦ୍ଧା ହାସଲ କରିବା ସକାଶେ ଆଠଟି ଲକ୍ଷ୍ୟ ଧାର୍ଯ୍ୟ କରିଥିଲେ । ଆଠଟି ଲକ୍ଷ୍ୟ ହାସଲ କରାଯାଇପାରିଲେ ୨୦୧୬ର ପ୍ରଥମ ସୂର୍ଯ୍ୟୋଦୟ ହୁଏତ ଏକ ନୂତନ ପୃଥିବୀ ଦେଖିବ । ହେଲେ ଏହା ହେବତ ? ଏମିତି ଅନେକ ପ୍ରତିଶ୍ରୁତି ଶୁଣିଛନ୍ତି ବିଶ୍ୱବାସୀ, ଭାରତବାସୀ । ଏ ଧରଣର ପ୍ରତିଶ୍ରୁତିକୁ ଅବିଶ୍ୱାସ କରିବା, ହସି ଉଡ଼ାଇ ଦେବା ଏବର ଏକ ସାଧାରଣ କଥା ହୋଇଗଲାଣି । ହେଲେ ଏଥରର କଥା ଟିକିଏ ନିଆରା । ସହସ୍ରାବ୍ଦର ପ୍ରତିଶ୍ରୁତି ସଂପର୍କରେ ମନେ ପକାଇ ଦେବାପାଇଁ ଏବଂ ଲକ୍ଷ୍ୟ କେତେଦୂର ହାସଲ ହେଲା ତାହା ତଦାରଖ କରିବା ପାଇଁ ମିଳିତ ଜାତିସଂଘ ଆନୁଷ୍ଠାନିକ ବ୍ୟବସ୍ଥାମାନ ମଧ କରିଛି । କେବଳ ସେତିକି ନୁହେଁ ସାରା ବିଶ୍ୱରେ ଏହି ସହସ୍ରାବ୍ଦର ଲକ୍ଷ୍ୟକୁ ନେଇ ବହୁ ଆଶା ସଞ୍ଚାର ହୋଇଛି । ବହୁ ଅଭିଯାନ ଚାଲିଛି ସରକାରମାନଙ୍କୁ ସେମାନଙ୍କର ପ୍ରତିଶ୍ରୁତି ସଂପର୍କରେ ମନେ ପକାଇଦେବାକୁ । ସରକାରଙ୍କ ଉପରେ ଚାପ ସୃଷ୍ଟି କରିବାକୁ ଆନ୍ତର୍ଜାତିକ ସ୍ତରରେ 'ୟୁଏନ୍ ମିଲେନିୟମ୍ କ୍ୟାମ୍ପେନ୍', 'ଗ୍ଲୋବାଲ୍ କ୍ୟାମ୍ପେନ୍ ଏଗେନଷ୍ଟ୍ ପୋଭର୍ଟି', 'ମେକ୍ ପୋଭର୍ଟି ହିଷ୍ଟ୍ରି' ଇତ୍ୟାଦି ଅଭିଯାନ ଚାଲିଥିବାବେଳେ ଭାରତରେ ଜାତୀୟ ସ୍ତରରେ 'ୱାଦା ନା ତୋଡ଼ୋ' ଅଭିଯାନ ଚାଲିଛି । ବିଭିନ୍ନ ରାଜ୍ୟରେ ଅନୁରୂପ କେତୋଟି ଅଭିଯାନ ଚାଲିଛି । 'କଥା ରଖିବା ସରକାର' ଅଭିଯାନ ଓଡ଼ିଶା ଯେପରି ସହସ୍ରାବ୍ଦର ଲକ୍ଷ୍ୟ ହାସଲ କରିପାରିବ ସେଥିପାଇଁ ଏକ ଉଦ୍ୟମ । 'କଥା ରଖିବା ସରକାର ଅଭିଯାନ'ର ଉଦ୍ଦେଶ୍ୟ ଉଭୟ ସରକାର ଏବଂ ଜନସାଧାରଣଙ୍କ ସହଯୋଗରେ ସହସ୍ରାବ୍ଦର ଲକ୍ଷ୍ୟ, ଭାରତର ବିକାଶ ଲକ୍ଷ୍ୟ, ଉପା ସରକାରଙ୍କ ସର୍ବନିମ୍ନ ସାଧାରଣ କାର୍ଯ୍ୟକ୍ରମ, ରାଜ୍ୟ ବିକାଶ ଲକ୍ଷ୍ୟ ଇତ୍ୟାଦି ହାସଲ ଦିଗରେ ଏକ ଘଟକର ଭୂମିକା ତୁଲାଇବା । ସେଥିପାଇଁ ଏହି ଅଭିଯାନର ନାମ 'କଥା ରଖ ସରକାର' ନୁହେଁ, 'କଥା ରଖିବା ସରକାର' ଅର୍ଥାତ୍ ସାମୁହିକ ଉଦ୍ୟମରେ ସରକାର ଦେଇଥିବା ପ୍ରତିଶ୍ରୁତିମାନ ପାଳନ କରିବା

ଦିଗରେ କାମ କରିବା । କାରଣ ଆମର ହୃଦ୍‌ବୋଧ ହୋଇଛି ଯେ, ଏପରି ଅନେକ ଲକ୍ଷ୍ୟ ରହିଛି, ଯାହାକି ଜନସାଧାରଣଙ୍କ ସହଯୋଗ ବିନା ସମ୍ଭବ ନୁହେଁ । ଉଦାହରଣ ସ୍ୱରୂପ ସଂପୂର୍ଣ୍ଣ ପରିମଳ ଯୋଜନାକୁ ନିଆଯାଇ ପାରେ । ଯେତେ ଅର୍ଥ ବ୍ୟୟ କଲେ ମଧ୍ୟ ସଂପୂର୍ଣ୍ଣ ପରିମଳ ଯୋଜନା କ'ଣ ସଫଳ ହୋଇ ପାରିବ ! ଜନସାଧାରଣ ସହଯୋଗର ହାତ ନ'ବଢ଼ାଇଲେ ଏବଂ ସରକାରଙ୍କ ଉପରେ ଚାପ ସୃଷ୍ଟି ନ'କଲେ ଏସବୁ ଲକ୍ଷ୍ୟ ହାସଲ ହୋଇପାରିବ ନାହିଁ । ୧୫ ବର୍ଷର ଅବଧି ଅଧା ସରିଲାଣି । ହେଲେ ଏ ସଂପର୍କରେ ଜନସାଧାରଣଙ୍କ ପାଖରେ ଯଥେଷ୍ଟ ତଥ୍ୟ ନାହିଁ । ସହସ୍ରାବ୍ଦର ଲକ୍ଷ୍ୟ ଏବଂ ଅନ୍ୟାନ୍ୟ ପ୍ରତିଶ୍ରୁତି ସଂପର୍କରେ ଜନସାଧାରଣଙ୍କୁ ସଚେତନ କରିବା ସକାଶେ କଥା ରଖିବା ସରକାର ଅଭିଯାନ ପକ୍ଷରୁ ଉଦ୍ୟମ କରାଯାଇଛି ।

ପ୍ରଥମ ପଦକ୍ଷେପ ସ୍ୱରୂପ ସହସ୍ରାବ୍ଦର ସଂକଳ୍ପ, ସହସ୍ରାବ୍ଦର ଲକ୍ଷ୍ୟ, ଏ ସଂପର୍କିତ ବିଶ୍ୱ ପରିସଂଖ୍ୟାନ ଇତ୍ୟାଦିକୁ ନେଇ ଏହି ପୁସ୍ତିକାଟି ପ୍ରସ୍ତୁତ କରାଯାଇଛି । ଆଶା ଏହା ସହସ୍ରାବ୍ଦର ଲକ୍ଷ୍ୟ ସଂପର୍କରେ ଜନସାଧାରଣଙ୍କ ମଧ୍ୟରେ ସଚେତନତା ସୃଷ୍ଟି କରିପାରିବ । ପରବର୍ତ୍ତୀ ପୁସ୍ତିକାଗୁଡ଼ିକରେ ଭାରତ ଓ ଓଡ଼ିଶା ସରକାରଙ୍କ ବିଭିନ୍ନ ପ୍ରତିଶ୍ରୁତି ସଂପର୍କରେ ଆଲୋଚନା କରାଯିବ ।

*'କଥା ରଖିବା ସରକାର' ଅଭିଯାନ*



# ସାଧାରଣ ପରିଷଦ ଦ୍ୱାରା ଗୃହୀତ ସଂକଳ୍ପ

## ଜାତିସଂଘର ସହସ୍ରାବ୍ଦ ଘୋଷଣା

### ୧) ମୂଲ୍ୟବୋଧ ଓ ନୀତି

୧. ଏକ ଶାନ୍ତ, ସମୃଦ୍ଧ ଓ ନ୍ୟାୟସଂଗତ ପୃଥିବୀର ମୂଳଦୂଆ ରୂପେ ଜାତିସଂଘ ସଂଗଠନ ଓ ଏହାର ସନନ୍ଦ ଉପରେ ପୁନଃ ଆସ୍ଥା ପ୍ରକଟ କରିବା ପାଇଁ ଆମେ ଦେଶ ଓ ସରକାରଙ୍କର ମୁଖ୍ୟମାନେ ନୂତନ ସହସ୍ରାବ୍ଦର ଅବ୍ୟବହିତ ପୂର୍ବରୁ ସେପ୍ଟେମ୍ବର ୬ରୁ ୮ ପର୍ଯ୍ୟନ୍ତ ନ୍ୟୁୟର୍କ ସ୍ଥିତ ଜାତିସଂଘ ମୁଖ୍ୟ କାର୍ଯ୍ୟାଳୟରେ ଏକତ୍ରିତ ହୋଇଛୁ ।

୨. ଆମେ ହୃଦୟଙ୍ଗମ କରୁଛୁ ଯେ ନିଜ ନିଜ ସମାଜ ପ୍ରତି ଆମର ଦାୟିତ୍ୱ ବ୍ୟତୀତ ଆନ୍ତର୍ଜାତିକ ସ୍ତରରେ ମାନବୀୟ ସମ୍ମାନ, ସାମ୍ୟ ଓ ନ୍ୟାୟ ଆଦି ମୂଲ୍ୟବୋଧର ସୁରକ୍ଷା କରିବା ଦିଗରେ ଆମର ଏକ ମିଳିତ ଦାୟିତ୍ୱ ରହିଛି । ତେଣୁ ନେତା ହିସାବରେ ଆମର ପୃଥିବୀର ସମସ୍ତ ଲୋକଙ୍କ ପ୍ରତି ଏବଂ ବିଶେଷ କରି ସବୁଠାରୁ ଅସହାୟ ଲୋକ ଓ ଶିଶୁମାନଙ୍କ ପ୍ରତି କର୍ତ୍ତବ୍ୟ ରହିଛି ।

୩. ଆମେ ଜାତିସଂଘ ସନନ୍ଦର କାଳଜୟୀ ଓ ବିଶ୍ୱଜନୀନ ଉଦ୍ଦେଶ୍ୟ ଓ ନୀତିଗୁଡ଼ିକ ପ୍ରତି ଆମର ଅଙ୍ଗୀକାରକୁ ଦୋହରାଉଛୁ । ଦେଶ ଓ ଲୋକମାନଙ୍କ ମଧ୍ୟରେ ସଂପର୍କ ଓ ନିର୍ଭରଶୀଳତା ବଢ଼ି ଚାଲିବା ଫଳରେ ଏସବୁର ପ୍ରାସଙ୍ଗିକତା ଓ ପ୍ରେରଣା ଯୋଗାଇ ଦେବାର କ୍ଷମତା ଏବେ ଆହୁରି ବଢ଼ି ଯାଇଛି ।

୪. ସନନ୍ଦର ଉଦ୍ଦେଶ୍ୟ ଓ ନୀତି ଅନୁଯାୟୀ ସମଗ୍ର ବିଶ୍ୱରେ ନ୍ୟାୟସଙ୍ଗତ ଓ ଦୀର୍ଘସ୍ଥାୟୀ ଶାନ୍ତି ସ୍ଥାପନ ପାଇଁ ଆମେ ବଦ୍ଧପରିକର । ଦେଶମାନଙ୍କର ସାର୍ବଭୌମତ୍ୱ ରକ୍ଷା, ସେମାନଙ୍କର ଭୌଗଳିକ ଅଖଣ୍ଡତା ଓ ରାଜନୈତିକ ସ୍ୱାଧୀନତା ପ୍ରତି ସମ୍ମାନ, ଶାନ୍ତିପୂର୍ଣ୍ଣ ତଥା ନ୍ୟାୟସଂଗତ ଓ ଆନ୍ତର୍ଜାତିକ ନିୟମ ଭିତ୍ତିରେ ସମସ୍ତ ବିବାଦର ସମାଧାନ, ଔପନିବେଶିକ ବା ବିଦେଶୀ ଶାସନରେ ଥିବା ଲୋକଙ୍କର ଆତ୍ମନିର୍ଦ୍ଧାରଣ ଅଧିକାର, ଦେଶମାନଙ୍କର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ ନ କରିବା, ମାନବିକ ଅଧିକାର ଓ ମୌଳିକ ସ୍ୱାଧୀନତା ପ୍ରତି ସମ୍ମାନ, ଜାତି, ଲିଙ୍ଗ, ଭାଷା ଓ ଧର୍ମ ନିର୍ବିଶେଷରେ ସମଗ୍ର ମାନବଜାତିର

ସମାନ ଅଧିକାର ପ୍ରତି ସମ୍ମାନ ଏବଂ ଆନ୍ତର୍ଜାତିକ ଅର୍ଥନୈତିକ, ସାମାଜିକ, ସାଂସ୍କୃତିକ ଓ ମାନବୀୟ ସମସ୍ୟାଗୁଡ଼ିକର ସମାଧାନ କ୍ଷେତ୍ରରେ ଆନ୍ତର୍ଜାତିକ ସହଯୋଗ ଦିଗରେ ହେଉଥିବା ସମସ୍ତ ଉଦ୍ୟମକୁ ସହଯୋଗ କରିବା ପାଇଁ ଆମେ ନିଜକୁ ପୁନଃ ଉତ୍ସର୍ଗୀକୃତ କରୁଛୁ ।

୫. ଆମେ ବିଶ୍ୱାସ କରୁ ଯେ ଆଜିର ମୁଖ୍ୟ ଆହ୍ୱାନ ହେଉଛି ଜଗତୀକରଣକୁ କିପରି ସମସ୍ତ ବିଶ୍ୱବାସୀଙ୍କ ପାଇଁ ଏକ ସକାରାତ୍ମକ ଶକ୍ତି ରୂପେ ଗଢ଼ି ତୋଳା ଯାଇ ପାରିବ । ଜଗତୀକରଣ ଅନେକ ସୁଯୋଗ ସୃଷ୍ଟି କରିଥିଲେ ମଧ୍ୟ ବର୍ତ୍ତମାନ ଏହାର ଲାଭ ଓ ମୂଲ୍ୟ ଉଭୟ ଅସମ ଭାବେ ଆବଣ୍ଟିତ । ଆମେ ହୃଦୟଙ୍ଗମ କରୁଛୁ ଯେ ଏହି ମୁଖ୍ୟ ଆହ୍ୱାନର ମୁକାବିଲା କରିବା ଦିଗରେ ବିକାଶଶୀଳ ଓ ପରିବର୍ତ୍ତନଶୀଳ ଅର୍ଥନୀତି ବିଶିଷ୍ଟ ରାଷ୍ଟ୍ରମାନେ ବିଶେଷ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ତେଣୁ ସମସ୍ତ ପାର୍ଥକ୍ୟ ସତ୍ତ୍ୱେ ଏକ ଅଭିନ୍ନ ମାନବତା ପାଇଁ ଏକ ମିଳିତ ଭବିଷ୍ୟତ ଗଠନ କରିବା ଦିଗରେ ବ୍ୟାପକ ଓ ଅବିରତ ଉଦ୍ୟମ ଦ୍ୱାରା ହିଁ ଜଗତୀକରଣକୁ ସାର୍ବଜନୀନ ଓ ନ୍ୟାୟସଂଗତ କରିହେବ । ଏଭଳି ଉଦ୍ୟମ ଆନୁକୂଲ୍ୟରେ ଆନ୍ତର୍ଜାତିକ ସ୍ତରରେ ବିକାଶଶୀଳ ଓ ପରିବର୍ତ୍ତନଶୀଳ ଅର୍ଥନୀତିବିଶିଷ୍ଟ ରାଷ୍ଟ୍ରମାନଙ୍କର ଆବଶ୍ୟକତାକୁ ପୂରଣ କରୁଥିବା ନୀତି ଗ୍ରହଣ କରାଯିବା ଓ ପଦକ୍ଷେପମାନ ନିଆଯିବା ଦରକାର । ଏସବୁର ପ୍ରଣୟନ ଓ ରୂପାୟନ କ୍ଷେତ୍ରରେ ସଂପୃକ୍ତ ଦେଶମାନଙ୍କର ଫଳପ୍ରଦ ସଂପୃକ୍ତି ଏକାନ୍ତ ଜରୁରୀ ।

୬. ଆମେ ବିଶ୍ୱାସ କରୁ ଯେ ଏକବିଂଶ ଶତାବ୍ଦୀରେ ଆନ୍ତର୍ଜାତିକ ସମ୍ପର୍କ ପାଇଁ କେତୋଟି ମୌଳିକ ମୂଲ୍ୟବୋଧ ଅପରିହାର୍ଯ୍ୟ । ସେଗୁଡ଼ିକ ହେଲା :

**ସ୍ୱାଧୀନତା :** ସବୁ ପୁରୁଷ ଓ ନାରୀଙ୍କର ସମ୍ମାନର ସହ ବଞ୍ଚିବାର ଓ ନିଜ ସନ୍ତାନସନ୍ତତିଙ୍କୁ କ୍ଷୁଧା ଓ ହିଂସାର ଭୟ, ଅତ୍ୟାଚାର ଓ ଅନ୍ୟାୟରୁ ମୁକ୍ତ ରଖି ଲାଳନପାଳନ କରିବାର ଅଧିକାର ଅଛି । ଲୋକମାନଙ୍କର ସାମୁହିକ ଇଚ୍ଛା ଉପରେ ଆଧାରିତ ଗଣତାନ୍ତ୍ରିକ ଓ ସହଭାଗୀ ଶାସନ ଦ୍ୱାରା ହିଁ ଏସବୁ ଅଧିକାରର ସୁରକ୍ଷା କରାଯାଇ ପାରିବ ।

**ସାମ୍ୟ :** କୌଣସି ବ୍ୟକ୍ତି ବା ରାଷ୍ଟ୍ର ବିକାଶର ଲାଭରୁ ବଞ୍ଚିତ ହେବ ନାହିଁ । ପୁରୁଷ ଓ ସ୍ତ୍ରୀଙ୍କୁ ସମାନ ଅଧିକାର ଓ ସୁଯୋଗ ମିଳିବା ଜରୁରୀ ।

**ଐକ୍ୟ :** ଆନ୍ତର୍ଜାତିକ ଆହ୍ୱାନଗୁଡ଼ିକର ଏଭଳି ଭାବେ ମୁକାବିଲା କରାଯିବା ଉଚିତ୍, ଯେପରିକି ସାମ୍ୟ ଓ ସାମାଜିକ ନ୍ୟାୟ ଆଧାରରେ ଏହାର ମୂଲ୍ୟ ଓ ବୋଝ ନ୍ୟାୟସଂଗତ ଭାବେ ଆବଣ୍ଟିତ ହେବ । ଯେଉଁମାନେ ଏହାଦ୍ୱାରା ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ବା ସବୁଠାରୁ କମ୍ ଲାଭବାନ ହେଉଥିବେ, ସେମାନେ ଏହାଦ୍ୱାରା ସବୁଠାରୁ ଅଧିକ ଲାଭବାନ ହେଉଥିବା ଲୋକ ବା ଦେଶମାନଙ୍କ ସାହାଯ୍ୟର ହକ୍‌ଦାର ।

**ସହନଶୀଳତା :** ବିଶ୍ୱାସ (ଧର୍ମ), ସଂସ୍କୃତି ଓ ଭାଷା ନିର୍ବିଶେଷରେ ସବୁ ମଣିଷଙ୍କର ପରସ୍ପର ପ୍ରତି ସମ୍ମାନ ରହିବା ଉଚିତ । ସମାଜ ମଧ୍ୟରେ ବା ଦୁଇଗୋଟି ସମାଜ ମଧ୍ୟରେ ଥିବା ବିଭେଦକୁ ଭୟ କରିବା ଓ ବଳପୂର୍ବକ ଚାପି ଦେବା ବଦଳରେ ଏହାକୁ ମାନବତାର ଅମୂଲ୍ୟ ସମ୍ପଦ ରୂପେ ବିଚାର କରାଯିବା ଉଚିତ । ବିଭିନ୍ନ ସଭ୍ୟତା ମଧ୍ୟରେ ଶାନ୍ତି ଓ କଥାବାର୍ତ୍ତାର ଏକ ବାତାବରଣ ସୃଷ୍ଟି ପାଇଁ ପ୍ରୋତ୍ସାହନ ଯୋଗାଇ ଦିଆଯିବା ଦରକାର ।

**ପ୍ରକୃତିର ସମ୍ମାନ :** ଦୀର୍ଘସ୍ଥାୟୀ ବିକାଶର ପରିଭାଷା ଅନୁଯାୟୀ ସମସ୍ତ ଜୀବ ଓ ପ୍ରାକୃତିକ ସମ୍ପଦର ପରିଚାଳନା କରାଯିବା ଉଚିତ । କେବଳ ଏହି ବାଟରେ ହିଁ ପ୍ରକୃତି ଆମକୁ ଦେଇଥିବା ଅମାପ ସମ୍ପତ୍ତିର ସୁରକ୍ଷା କରାଯିବା ସହିତ ଏଗୁଡ଼ିକୁ ଭବିଷ୍ୟତ ବଂଶଧରଙ୍କ ପାଇଁ ଛାଡ଼ିଯାଇ ହେବ । ଭବିଷ୍ୟତରେ ଆମର ଓ ଆମର ବଂଶଧରଙ୍କ ବିକାଶ ପାଇଁ ବର୍ତ୍ତମାନର ଅଣ-ଦୀର୍ଘସ୍ଥାୟୀ ଉତ୍ପାଦନ ଓ ବ୍ୟବହାର ପ୍ରଣାଳୀରେ ପରିବର୍ତ୍ତନ ଅଣାଯିବା ଦରକାର ।

**ମିଳିତ ଦାୟିତ୍ୱ :** ବିଶ୍ୱବ୍ୟାପୀ ଆର୍ଥିକ ଓ ସାମାଜିକ ବିକାଶ ତଥା ଆନ୍ତର୍ଜାତିକ ଶାନ୍ତି ଓ ସୁରକ୍ଷା ପ୍ରତି ଥିବା ବିପଦର ମୁକାବିଲା କରିବାର ଦାୟିତ୍ୱ ସବୁ ଦେଶ ବହନ କରିବା ଉଚିତ ଓ ଏହା ବହୁମୁଖୀ ଭାବେ ସମ୍ପାଦିତ ହେବା

ବିଧେୟ । ପୃଥିବୀର ସବୁଠାରୁ ସାର୍ବଜନୀନ ଓ ପ୍ରତିନିଧିମୂଳକ ସଂଗଠନ ଭାବରେ ଜାତିସଂଘ ଏଥିରେ ପ୍ରମୁଖ ଭୂମିକା ନେବା ଜରୁରୀ ।

୭. ଏହିସବୁ ସାର୍ବଜନୀନ ମୂଲ୍ୟବୋଧଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ଆମେ କେତୋଟି ମୌଳିକ ଉଦ୍ଦେଶ୍ୟ ନିର୍ଦ୍ଧାରଣ କରିଛୁ ଏବଂ ଏଗୁଡ଼ିକୁ ବିଶେଷ ଗୁରୁତ୍ୱ ଦେଇଛୁ ।

## ୨) ଶାନ୍ତି, ସୁରକ୍ଷା ଓ ନିରସ୍ତ୍ରୀକରଣ

୮. କୌଣସି ଦେଶ ମଧ୍ୟରେ ବା ଦୁଇ ଦେଶ ମଧ୍ୟରେ ଯୁଦ୍ଧର ବିଭୀଷିକା (ଯାହା ଫଳରେ ବିଗତ ଏକ ଦଶନ୍ଧି ମଧ୍ୟରେ ୫୦ ଲକ୍ଷ ଲୋକ ପ୍ରାଣ ହରାଇଛନ୍ତି)ରୁ ଲୋକଙ୍କୁ ରକ୍ଷା କରିବା ପାଇଁ ଆମେ ସବୁମତେ ଉଦ୍ୟମ କରିବୁ । ଗଣଧ୍ୱଂସୀ ଅସ୍ତ୍ରଶସ୍ତ୍ର ଦ୍ୱାରା ସୃଷ୍ଟି ହୋଇଥିବା ବିପଦକୁ ମଧ୍ୟ ଦୂର କରିବା ପାଇଁ ଆମେ ସମସ୍ତ ଉଦ୍ୟମ କରିବୁ ।

୯. ତେଣୁ ଆମେ ଶପଥ ନେଉଛୁ ଯେ;

- ଜାତିସଂଘ ସନନ୍ଦ ଅନୁଯାୟୀ ଦେଶୀୟ ଓ ଆନ୍ତର୍ଜାତିକ ବ୍ୟାପାରରେ ଆଇନ୍‌ର ଶାସନ ପ୍ରତି ସମ୍ମାନ ବୃଦ୍ଧି କରିବା ପାଇଁ ଦେଶ, ଦେଶ ମଧ୍ୟରେ ଥିବା ବିବାଦ ସମ୍ପର୍କରେ ଆନ୍ତର୍ଜାତିକ ନ୍ୟାୟାଳୟର ନିଷ୍ପତ୍ତିକୁ ଯେପରି ସବୁପକ୍ଷ ମାନିନେବେ, ସେ ଦିଗରେ ଉଦ୍ୟମ କରିବୁ ।
- ବିବାଦ ରୋକିବା, ବିବାଦର ଶାନ୍ତିପୂର୍ଣ୍ଣ ସମାଧାନ, ଶାନ୍ତିରକ୍ଷା, ଯୁଦ୍ଧୋତ୍ତର କାଳରେ ଶାନ୍ତିପ୍ରତିଷ୍ଠା ଓ ପୁନର୍ଗଠନ ପାଇଁ ଆବଶ୍ୟକ ସମ୍ବଳ ଓ ଉପକରଣ ଯୋଗାଇ ଦେଇ ଶାନ୍ତି ଓ ସୁରକ୍ଷା ବଜାୟ ରଖିବାରେ ଜାତିସଂଘକୁ ଅଧିକ ପ୍ରଭାବଶାଳୀ କରିବୁ । ଏ ପରିପ୍ରେକ୍ଷୀରେ ଆମେ ଶାନ୍ତି ରକ୍ଷା ସଂକ୍ରାନ୍ତୀୟ ଜାତିସଂଘ କମିଟିର ରିପୋର୍ଟକୁ ବିଚାରକୁ ନେବା ସହିତ ଏହାର ପରାମର୍ଶଗୁଡ଼ିକୁ ତୁରନ୍ତ ବିଚାର କରିବା ପାଇଁ ସାଧାରଣ ପରିଷଦକୁ ଅନୁରୋଧ କରୁଛୁ ।
- ସନନ୍ଦର ଅଷ୍ଟମ ଅଧ୍ୟାୟରେ ଥିବା ବ୍ୟବସ୍ଥା ଅନୁଯାୟୀ ଜାତିସଂଘ ଓ ଆଞ୍ଚଳିକ ସଂଗଠନଗୁଡ଼ିକ ମଧ୍ୟରେ ସହଯୋଗକୁ ଦୃଢ଼ୀଭୂତ କରିବୁ ।
- ଅସ୍ତ୍ର ନିରୋଧ, ନିରସ୍ତ୍ରୀକରଣ, ଆନ୍ତର୍ଜାତିକ ଆଇନ୍ ଓ ମାନବାଧିକାର

ନିୟମ କ୍ଷେତ୍ରରେ ଥିବା ବିଭିନ୍ନ ରାଜିନାମାକୁ ସଦସ୍ୟ ରାଷ୍ଟ୍ରମାନେ ଯେପରି ଲାଗୁ କରନ୍ତି, ତାହା ନିଶ୍ଚିତ କରିବା ସହିତ ଆନ୍ତର୍ଜାତିକ ଫୌଜଦାରୀ କୋର୍ଟର ରୋମ୍ ଘୋଷଣାରେ ସ୍ୱାକ୍ଷର ଓ ଅନୁମୋଦନ କରିବା ପାଇଁ ସବୁ ଦେଶକୁ ଅନୁରୋଧ କରିବୁ ।

- ଆନ୍ତର୍ଜାତିକ ସନ୍ତ୍ରାସବାଦ ବିରୁଦ୍ଧରେ ମିଳିତ ଉଦ୍ୟମ କରିବା ସହିତ ଏ ସମ୍ପର୍କିତ ସମସ୍ତ ଆନ୍ତର୍ଜାତିକ ଚୁକ୍ତିକୁ ଯଥାଶିଘ୍ର ସମ୍ମତି ପ୍ରଦାନ କରିବୁ ।
- ବିଶ୍ୱର ନିଶାଦ୍ରବ୍ୟ ସେବନ ସମସ୍ୟାର ମୁକାବିଲା ଦିଗରେ ଉଦ୍ୟମକୁ ଆମେ ଆହୁରି ଶାଣିତ କରିବୁ
- ନିରୀହ ଲୋକଙ୍କ ଉପରେ ଜାତିସଂଘ କଟକଣାର କୁପ୍ରଭାବକୁ କମାଇବା ତଥା ଏଭଳି କଟକଣା ବ୍ୟବସ୍ଥାର ନିୟମିତ ତର୍ଜମା କରିବା ସହିତ ତୃତୀୟ ପକ୍ଷ ଉପରେ ଏସବୁ କଟକଣାର କୁପ୍ରଭାବକୁ ସଂପୂର୍ଣ୍ଣ ଭାବେ ରୋକିବା ପାଇଁ ଉଦ୍ୟମ କରିବୁ ।
- ଗଣଧ୍ୱଂସୀ ଅସ୍ତ୍ରଶସ୍ତ୍ର-ବିଶେଷ କରି ଆଣବିକ ଯୁଦ୍ଧାସ୍ତ୍ରଗୁଡ଼ିକର ନିରାକରଣ ଦିଗରେ ଉଦ୍ୟମ ଜାରି ରଖିବୁ ତଥା ଏ ଉଦ୍ଦେଶ୍ୟ ସାଧନ ପାଇଁ ଆନ୍ତର୍ଜାତିକ ସମ୍ମିଳନୀର ଆୟୋଜନ କରିବା ସମେତ ସମସ୍ତ ସମ୍ଭାବନା ଉନ୍ମୁକ୍ତ ରଖିବୁ ।
- କ୍ଷୁଦ୍ର ଅସ୍ତ୍ରଶସ୍ତ୍ରର ଚାଲାଣକୁ ଅଧିକ ସ୍ୱଚ୍ଛ କରିବା ଓ ଆଞ୍ଚଳିକ ନିରସ୍ତ୍ରୀକରଣ ଉଦ୍ୟମକୁ ସମର୍ଥନ ଜରିଆରେ ଏସବୁର ବେଆଇନ୍ କାରବାରକୁ ବନ୍ଦ କରିବୁ । ଏ ପରିପ୍ରେକ୍ଷୀରେ ଆମେ କ୍ଷୁଦ୍ର ଅସ୍ତ୍ରଶସ୍ତ୍ରର ବେଆଇନ୍ କାରବାର ଉପରେ ଆଗାମୀ ଜାତିସଂଘ ବୈଠକର ପ୍ରସ୍ତାବଗୁଡ଼ିକୁ ବିଚାରକୁ ନେବୁ ।
- ମାଇନ୍‌ର ବ୍ୟବହାର, ମହଜୁଦ, ଉତ୍ପାଦନ ଓ ଚାଲାଣ ରୋକିବା ପାଇଁ ଓ ସେଗୁଡ଼ିକ ନଷ୍ଟ କରିବା ପାଇଁ ହୋଇଥିବା ଆନ୍ତର୍ଜାତିକ ରାଜିନାମା ତଥା ପାରମ୍ପରିକ ଅସ୍ତ୍ର ସମ୍ପର୍କିତ ରାଜିନାମାର ସଂଶୋଧିତ ମାଇନ୍ ବ୍ୟବସ୍ଥାରେ ସ୍ୱାକ୍ଷର କରିବା ପାଇଁ ସବୁ ଦେଶଙ୍କୁ ଅନୁରୋଧ କରିବୁ ।

୧୦. ଆମେ ସମସ୍ତ ସଦସ୍ୟ ରାଷ୍ଟ୍ରଙ୍କୁ ବ୍ୟକ୍ତିଗତ ଓ ସାମୁହିକ ଭାବେ ତଥା ବର୍ତ୍ତମାନ ଓ ଭବିଷ୍ୟତରେ ଅଲିମ୍ପିକ ଯୁଦ୍ଧବିରତିକୁ ପାଳନ କରିବା ସହିତ ଖେଳ ଓ ଅଲିମ୍ପିକ ଆଦର୍ଶ ଜରିଆରେ ଶାନ୍ତି ଓ ମାନବୀୟ ବୁଝାମଣାର ପ୍ରସାର ପାଇଁ

ଆନ୍ତର୍ଜାତିକ ଅଲିମ୍ପିକ୍ କମିଟିର ଉଦ୍ୟମକୁ ସହଯୋଗ କରିବା ପାଇଁ ଅନୁରୋଧ କରୁଛୁ ।

## ୩) ବିକାଶ ଓ ଦାରିଦ୍ର୍ୟ ଦୂରୀକରଣ

୧୧. ଆମେ ଅତିଶୟ ଓ ଅମାନବୀୟ ଦାରିଦ୍ର୍ୟର ନିଗଡ଼ରେ ରହିଥିବା ୧୦୦ କୋଟିରୁ ଊର୍ଦ୍ଧ୍ୱ ପୁରୁଷ, ମହିଳା ଓ ଶିଶୁଙ୍କୁ ଏଥିରୁ ମୁକ୍ତ କରିବା ପାଇଁ ସମସ୍ତ ଉଦ୍ୟମ କରିବୁ । ବିକାଶ ଅଧିକାରକୁ ପ୍ରତ୍ୟେକ ବ୍ୟକ୍ତି ପାଇଁ ସାକାର କରିବା ସହ ସମଗ୍ର ମାନବଜାତିକୁ ଅଭାବରୁ ମୁକ୍ତ କରିବା ପାଇଁ ଆମେ ଅଙ୍ଗୀକାରବଦ୍ଧ ।

୧୨. ତେଣୁ ଆମେ ଉଭୟ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ବିକାଶ ଓ ଦାରିଦ୍ର୍ୟ ଦୂରୀକରଣ ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିବା ପାଇଁ ଶପଥ ନେଉଛୁ ।

୧୩. ଏସବୁ ଉଦ୍ଦେଶ୍ୟ ସାଧନ ପ୍ରତ୍ୟେକ ଦେଶରେ ଉତ୍ତମ ଶାସନ ଉପରେ ନିର୍ଭରଶୀଳ । ଆହୁରି ମଧ୍ୟ ଏହା ଆନ୍ତର୍ଜାତିକ ସ୍ତରରେ ଉତ୍ତମ ଶାସନ ତଥା ଆର୍ଥିକ ଓ ବ୍ୟବସାୟିକ ବ୍ୟବସ୍ଥାରେ ସ୍ୱଚ୍ଛତା ଉପରେ ନିର୍ଭର କରେ । ଏକ ମୁକ୍ତ, ନ୍ୟାୟସଂଗତ, ବିଧିନିର୍ଦ୍ଧାରିତ ଅନୁମୋଦନ ଓ ପକ୍ଷପାତରହିତ ବହୁପାକ୍ଷିକ ବ୍ୟବସାୟ ଓ ଆର୍ଥିକ ବ୍ୟବସ୍ଥା ପ୍ରତି ଆମେମାନେ ଅଙ୍ଗୀକାରବଦ୍ଧ ।

୧୪. ନିଜର ଦୀର୍ଘସ୍ଥାୟୀ ବିକାଶ ପାଇଁ ଆବଶ୍ୟକ ସମ୍ବଳ ଯୋଗାଡ଼ କରିବାରେ ବିକାଶଶୀଳ ରାଷ୍ଟ୍ରଗୁଡ଼ିକ ସାମ୍ନା କରୁଥିବା ଅସୁବିଧା ସମ୍ପର୍କରେ ଆମେ ଚିନ୍ତିତ । ତେଣୁ ଆମେ ୨୦୦୧ରେ ହେବାକୁ ଥିବା ବିକାଶ ପାଇଁ ପୁଞ୍ଜିଲଗାଣ ସମ୍ପର୍କିତ ଉଚ୍ଚସ୍ତରୀୟ ଆନ୍ତର୍ଜାତିକ ଓ ଆନ୍ତଃସରକାର ବୈଠକର ସଫଳତା ପାଇଁ ସମସ୍ତ ଉଦ୍ୟମ କରିବୁ ।

୧୫. ଆମେ ଆହୁରି ମଧ୍ୟ ସବୁଠାରୁ କମ୍ ବିକଶିତ ଦେଶଗୁଡ଼ିକର ବିଶେଷ ଆବଶ୍ୟକତାଗୁଡ଼ିକ ପୂରଣ କରିବା ପାଇଁ ଉଦ୍ୟମ କରିବୁ । ଏ ପରିପ୍ରେକ୍ଷୀରେ ଆମେ ମେ, ୨୦୦୧ରେ ହେବାକୁ ଥିବା କମ୍ ବିକଶିତ ରାଷ୍ଟ୍ରମାନଙ୍କ ଉପରେ ହେବାକୁ ଥିବା ତୃତୀୟ ଜାତିସଂଘ ସମ୍ମିଳନୀକୁ ସ୍ୱାଗତ କରୁଛୁ ଓ ଏହାକୁ ସଫଳ କରିବା ପାଇଁ ସବୁମତେ ଉଦ୍ୟମ କରିବା ପାଇଁ ପ୍ରତିଶ୍ରୁତି ଦେଉଛି । ଆମେ ଶିଳ୍ପୋନ୍ନତ ରାଷ୍ଟ୍ରମାନଙ୍କୁ ଅନୁରୋଧ କରୁଛୁ ଯେ ସେମାନେ:-

- ସବୁଠାରୁ କମ୍ ବିକଶିତ ରାଷ୍ଟ୍ରଗୁଡ଼ିକ ରପ୍ତାନୀ କରୁଥିବା ସମସ୍ତ ଦ୍ରବ୍ୟକୁ ଶୁଳ୍କ ଓ କୋଟାର ପ୍ରତିବନ୍ଧକରୁ ମୁକ୍ତ କରିବା ପାଇଁ ନୀତିଗତ ନିଷ୍ପତ୍ତି ନିଅନ୍ତୁ (ସମ୍ଭବ ହେଲେ ଉକ୍ତ ସମ୍ମିଳନୀ ପୂର୍ବରୁ) ।
- କାଳ ବିଳମ୍ବ ନକରି ଗୁରୁତର ଭାବେ ଋଣଗ୍ରସ୍ତ ଗରିବ ଦେଶମାନଙ୍କ ପାଇଁ ଉଦ୍ଦିଷ୍ଟ ସଂପ୍ରସାରିତ ଋଣ ଲାଘବ କାର୍ଯ୍ୟକ୍ରମକୁ ଲାଗୁ କରିବା ସହିତ ଯେଉଁ ଦେଶମାନେ ଦାରିଦ୍ର୍ୟ ନିରାକରଣ ପାଇଁ ବିଶ୍ୱସନୀୟ ଅଙ୍ଗୀକାର ପ୍ରଦର୍ଶନ କରିବେ, ସେମାନଙ୍କ କ୍ଷେତ୍ରରେ ସମସ୍ତ ଦ୍ୱିପାକ୍ଷିକ ଋଣ ଛାଡ଼ କରନ୍ତୁ ।
- ବିକାଶ ସହାୟତା ଦେବାରେ ଅଧିକ ବଦାନ୍ୟତା ପ୍ରଦର୍ଶନ କରନ୍ତୁ- ବିଶେଷ କରି ସେହି ରାଷ୍ଟ୍ରମାନଙ୍କ କ୍ଷେତ୍ରରେ, ଯେଉଁମାନେ ଦାରିଦ୍ର୍ୟ ନିରାକରଣ ପାଇଁ ନିଜ ସମ୍ବଳର ବ୍ୟବହାର କରିବା ଦିଗରେ ନିଷ୍ଠାପର ଉଦ୍ୟମ କରୁଛନ୍ତି ।

୧୬. ବିଭିନ୍ନ ରାଷ୍ଟ୍ରୀୟ ଓ ଆନ୍ତର୍ଜାତିକ ପଦକ୍ଷେପ ଜରିଆରେ ନିମ୍ନ ଏବଂ ମଧ୍ୟମ ଆୟ ବିଶିଷ୍ଟ ବିକାଶଶୀଳ ରାଷ୍ଟ୍ରଗୁଡ଼ିକର ଋଣ ସମସ୍ୟାର ସାମଗ୍ରିକ ଓ ଫଳପ୍ରଦ ମୁକାବିଲା ପାଇଁ ଆମେ ବଦ୍ଧପରିକର । ଏହା ଫଳରେ ଦୀର୍ଘ ମିଆଦରେ ସେମାନଙ୍କର ଋଣଭାର ଅକ୍ତିଆରରେ ରହିବ ।

୧୭. ଆମେ ବାରବାଡୋସ କାର୍ଯ୍ୟକ୍ରମ ଓ ସାଧାରଣ ପରିଷଦର ୨୨ଶ ବିଶେଷ ଅଧିବେଶନର ପ୍ରସ୍ତାବଗୁଡ଼ିକୁ ତତ୍କାଳ ଓ ସଂପୂର୍ଣ୍ଣ ଭାବେ ଲାଗୁ କରି କ୍ଷୁଦ୍ର, ବିକାଶଶୀଳ ଦ୍ୱୀପ ରାଷ୍ଟ୍ରଗୁଡ଼ିକର ବିଶେଷ ଆବଶ୍ୟକତା ପୂରଣ କରିବା ପାଇଁ ନିଷ୍ପତ୍ତି ନେଉଛୁ । ଅସୁରକ୍ଷା ସୂଚକାଙ୍କ ନିର୍ଦ୍ଧାରଣ କଲାବେଳେ କ୍ଷୁଦ୍ର, ବିକାଶଶୀଳ ଦ୍ୱୀପ ରାଷ୍ଟ୍ରଗୁଡ଼ିକର ବିଶେଷ ଆବଶ୍ୟକତାଗୁଡ଼ିକୁ ବିଚାରକୁ ନେବା ପାଇଁ ଆମେ ଆନ୍ତର୍ଜାତିକ ସଂପ୍ରଦାୟକୁ ଅନୁରୋଧ କରୁଛୁ ।

୧୮. ଆମେ ସ୍ଥଳରୁଦ୍ଧ ବିକାଶଶୀଳ ରାଷ୍ଟ୍ରଗୁଡ଼ିକର ବିଶେଷ ଆବଶ୍ୟକତା ଓ ଅସୁବିଧାଗୁଡ଼ିକୁ ହୃଦୟଙ୍ଗମ କରିବା ସହିତ ଏଭଳି ରାଷ୍ଟ୍ରଗୁଡ଼ିକୁ ଆର୍ଥିକ ଓ ବୈଷୟିକ ସହାୟତା ବୃଦ୍ଧି କରିବା ପାଇଁ ଉଭୟ ଦ୍ୱିପାକ୍ଷିକ ଓ ବହୁପାକ୍ଷିକ ଋଣପ୍ରଦାନକାରୀମାନଙ୍କୁ ଅନୁରୋଧ କରୁଛୁ, ଯେପରିକି ସେମାନେ ନିଜର ବିଶେଷ ଆବଶ୍ୟକତା ପୂରଣ କରିବା ସହିତ ପରିବହନ ବ୍ୟବସ୍ଥାର ଉନ୍ନତି ଜରିଆରେ ନିଜ, ନିଜର ଭୌଗୋଳିକ ଅସୁବିଧା ଦୂର କରିପାରିବେ ।

୧୯. ଆମେ ଆହୁରି ମଧ୍ୟ ନିଷ୍ପତ୍ତି ନେଉଛୁ ଯେ ;

- ୨୦୧୫ ମଧ୍ୟରେ ଆମେ ଦୈନିକ ଏକ ଡଲାରରୁ କମ୍ ରୋଜଗାର କରୁଥିବା, ଭୋକରେ ରହୁଥିବା ଓ ନିରାପଦ ପାନୀୟ ଜଳ ପାଉ ନ ଥିବା ଲୋକଙ୍କ ସଂଖ୍ୟା ଅଧା କରିବୁ ।
- ସେହି ସମୟ ମଧ୍ୟରେ ପୁଅ, ଝିଅ ନିର୍ବିଶେଷରେ ସମସ୍ତ ଶିଶୁ ଯେପରି ପ୍ରାଥମିକ ଶିକ୍ଷା ସମାପ୍ତ କରିବେ ଏବଂ ଶିକ୍ଷାର ସବୁ ସ୍ତରରେ ଉଭୟ ପୁଅ ଓ ଝିଅ ସମାନ ସୁବିଧା ସୁଯୋଗ ପାଇ ପାରିବେ-ତାହା ନିଶ୍ଚିତ କରିବୁ ।
- ସେହି ସମୟ ମଧ୍ୟରେ ଗର୍ଭବତୀ ମହିଳାଙ୍କ ମୃତ୍ୟୁହାର ବର୍ତ୍ତମାନ ହାରର ତିନି ଚତୁର୍ଥାଂଶ ଓ ପାଞ୍ଚ ବର୍ଷରୁ କମ୍ ବୟସର ଶିଶୁ ମୃତ୍ୟୁହାର ଦୁଇ, ତୃତୀୟାଂଶ କମାଇବୁ ।
- ସେହି ସମୟ ମଧ୍ୟରେ ଏଚ୍.ଆଇ.ଭି/ଏଡ୍ସ୍, ମ୍ୟାଲେରିଆ ଓ ମଣିଷକୁ ଆକ୍ରାନ୍ତ କରୁଥିବା ଅନ୍ୟ ପ୍ରମୁଖ ରୋଗଗୁଡ଼ିକର ପ୍ରସାର ବନ୍ଦ କରିବା ସହିତ ଏସବୁକୁ କମ୍ କରିବୁ ।
- ଏଚ୍.ଆଇ.ଭି/ଏଡ୍ସ୍ ଯୋଗୁଁ ପିତା, ମାତାଙ୍କୁ ହରାଇଥିବା ଶିଶୁମାନଙ୍କୁ ବିଶେଷ ସହାୟତା ଯୋଗାଇ ଦେବୁ ।
- 'ବସ୍ତିବିହୀନ ସହର' ଯୋଜନା ମୁତାବକ ଅନ୍ତତଃ ୧୦ କୋଟି ବସ୍ତିବାସିନ୍ଦାଙ୍କ ଜୀବନରେ ଉଲ୍ଲେଖନୀୟ ଉନ୍ନତି ଆଣିବୁ ।

୨୦. ଆମେ ଆହୁରି ମଧ୍ୟ ନିଷ୍ପତ୍ତି ନେଉଛୁ ଯେ ;

- ଦାରିଦ୍ର୍ୟ, ଅନାହାର, ରୋଗକୁ ମୁକାବିଲା କରିବା ଓ ପ୍ରକୃତ ଦୀର୍ଘସ୍ଥାୟୀ ବିକାଶ ସାଧନ କରିବାରେ ଫଳପ୍ରଦ ଉପାୟ ରୂପେ ଲିଙ୍ଗଭିତ୍ତିକ ସାମ୍ୟ ଓ ମହିଳା ସଶକ୍ତିକରଣକୁ ପ୍ରୋତ୍ସାହିତ କରିବୁ ।
- ଏଭଳି ଉପାୟଗୁଡ଼ିକର ବିକାଶ ଓ ରୂପାୟନ କରିବୁ, ଯାହା ଫଳରେ ଯୁବବର୍ଗ ସର୍ବତ୍ର ସମ୍ମାନଜନକ ଓ ଲାଭକରୀ କାମ କରିବାର ପ୍ରକୃତ ସୁଯୋଗ ପାଇବେ ।
- ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଔଷଧଗୁଡ଼ିକୁ ବହୁଳ ଭାବରେ ଓ କମ୍ ମୂଲ୍ୟରେ ଉପଲବ୍ଧ କରିବା ପାଇଁ ଔଷଧ କମ୍ପାନୀମାନଙ୍କୁ ଅନୁରୋଧ କରିବୁ ।

- ବିକାଶ ଓ ଦାରିଦ୍ର୍ୟ ଦୂରୀକରଣର ଲକ୍ଷ୍ୟ ହାସଲ ପାଇଁ ଘରୋଇ କ୍ଷେତ୍ର ଓ ନାଗରିକ ଅନୁଷ୍ଠାନଗୁଡ଼ିକ ସହ ଏକ ଦୃଢ଼ ଭାଗିଦାରି ସୃଷ୍ଟି କରିବୁ ।
- 'ଇକୋସୋକ୍-୨୦୦୨' ମନ୍ତ୍ରୀସ୍ତରୀୟ ଘୋଷଣା ଅନୁଯାୟୀ ନୂତନ କାରିଗରୀ ବିଦ୍ୟା-ବିଶେଷକରି ସୂଚନା ଓ ଯୋଗାଯୋଗ କୌଶଳ- ଯେପରି ସମସ୍ତଙ୍କ ପାଇଁ ଉପଲବ୍ଧ ହେବ, ତାହା ନିଶ୍ଚିତ କରିବୁ ।

## ୪) ଆମ ପରିବେଶର ସୁରକ୍ଷା

୨୧. ସମଗ୍ର ମାନବଜାତି ତଥା ଆମର ପୁଅ, ନାତିମାନଙ୍କୁ ଏଭଳି ଏକ ପୃଥିବୀରେ ବଞ୍ଚିବାର ବିପଦରୁ ମୁକ୍ତ କରିବୁ, ଯାହା ମଣିଷର ଗତିବିଧି ଯୋଗୁଁ ସଂପୂର୍ଣ୍ଣ ଭାବେ ନଷ୍ଟ ହୋଇଯାଇଛି ଓ ଯାହାର ସମ୍ବଳ ସେମାନଙ୍କର ଆବଶ୍ୟକତା ମେଣ୍ଟାଇବା ପାଇଁ ଯଥେଷ୍ଟ ନୁହେଁ ।

୨୨. ଜାତିସଂଘ ପରିବେଶ ଓ ବିକାଶ ସମ୍ମିଳନୀର କାର୍ଯ୍ୟସୂଚୀ-୨୧ରେ ଉଲ୍ଲେଖ କରାଯାଇଥିବା ନୀତି ସମେତ ଦୀର୍ଘସ୍ଥାୟୀ ବିକାଶ ନୀତିଗୁଡ଼ିକ ପ୍ରତି ଆମେ ପୁଣି ଥରେ ସମର୍ଥନ ଜଣାଉଛୁ ।

୨୩. ତେଣୁ ଆମେ ଆମର ସମସ୍ତ ପାରିବେଶିକ କାର୍ଯ୍ୟକଳାପରେ ସଂରକ୍ଷଣ ଓ ତତ୍ତ୍ୱାବଧାନର ଏକ ନୂତନ ମୂଲ୍ୟବୋଧ ଲାଗୁ କରିବୁ । ଏ ଦିଗରେ ପ୍ରଥମ ପଦକ୍ଷେପ ସ୍ୱରୂପ ଆମେ ନିଷ୍ପତ୍ତି ନେଉଛୁ ଯେ:

- କ୍ୟୋଟୋ ରାଜିନାମାକୁ କାର୍ଯ୍ୟକାରୀ କରି ଗ୍ରୀନ୍‌ହାଉସ୍ ଗ୍ୟାସ୍‌ଗୁଡ଼ିକର ବିକୀରଣରେ ଆବଶ୍ୟକ ହ୍ରାସ କରିବା ଦିଗରେ ଉଦ୍ୟମ କରିବୁ । ୨୦୦୨ରେ ଜାତିସଂଘ ପରିବେଶ ଓ ବିକାଶ ସମ୍ମିଳନୀର ଦଶବର୍ଷ ପୂର୍ତ୍ତି ପୂର୍ବରୁ ଏହି ରାଜିନାମାକୁ କାର୍ଯ୍ୟକାରୀ କରିବା ପାଇଁ ଆମେ ଉଦ୍ୟମ କରିବୁ ।
- ସବୁପ୍ରକାର ଜଙ୍ଗଲର ପରିଚାଳନା, ସଂରକ୍ଷଣ ଓ ଦୀର୍ଘସ୍ଥାୟୀ ବିକାଶ ପାଇଁ ଆମର ସାମୂହିକ ଉଦ୍ୟମକୁ ଆହୁରି ବ୍ୟାପକ କରିବୁ ।
- ଯେଉଁ ଦେଶଗୁଡ଼ିକ ଗୁରୁତର ମରୁଡ଼ି ଓ ମରୁକରଣର ମୁକାବିଲା କରୁଛନ୍ତି (ବିଶେଷକରି ଆଫ୍ରିକାରେ), ସେ ସବୁ ଦେଶରେ ଜୈବ ବିବିଧତା

ରାଜିନାମା ଓ ମରୁକରଣ ମୁକାବିଲା ରାଜିନାମାକୁ ସଂପୂର୍ଣ୍ଣ ଭାବେ ଲାଗୁ କରାଯିବା ପାଇଁ ଚାପ ପ୍ରୟୋଗ କରିବୁ ।

- ଜଳ ସମ୍ବଳର ଅଣ-ଦୀର୍ଘସ୍ଥାୟୀ ଆହରଣକୁ ପ୍ରତିହତ କରିବା ପାଇଁ କ୍ଷେତ୍ରୀୟ, ରାଷ୍ଟ୍ରୀୟ ଓ ସ୍ଥାନୀୟ ସ୍ତରରେ ଜଳ ପରିଚାଳନାର ଏଭଳି ରଣନୀତି ପ୍ରସ୍ତୁତ କରିବୁ, ଯାହା ସମାନୁପାତିକ ଉପଲବ୍ଧତା ଓ ଯଥେଷ୍ଟ ଯୋଗାଣକୁ ନିଶ୍ଚିତ କରିବ ।
- ମନୁଷ୍ୟକୃତ ବିପର୍ଯ୍ୟୟର ସଂଖ୍ୟା ଓ କୁପ୍ରଭାବ କମ୍ କରିବା ଦିଗରେ ପାରସ୍ପରିକ ସହଯୋଗକୁ ବ୍ୟାପକ କରିବୁ ।
- ମାନବୀୟ ଜିନ୍ ଶୃଙ୍ଖଳା ସମ୍ପର୍କରେ ସୂଚନା ଓ ଜ୍ଞାନ ସମସ୍ତଙ୍କୁ ଉପଲବ୍ଧ କରିବୁ ।

## ୫) ମାନବିକ ଅଧିକାର, ଗଣତନ୍ତ୍ର ଓ ଉତ୍ତମ ଶାସନ

୨୪. ଗଣତନ୍ତ୍ରର ପ୍ରସାର, ଆଇନଗତ ଶାସନର ସଶକ୍ତୀକରଣ ତଥା ବିକାଶ ଅଧିକାର ସମେତ ଆନ୍ତର୍ଜାତିକ ସ୍ତରରେ ସ୍ୱୀକୃତିପ୍ରାପ୍ତ ସମସ୍ତ ମାନବିକ ଅଧିକାର ଓ ମୌଳିକ ସ୍ୱାଧୀନତା ପ୍ରତି ସମ୍ମାନ ବୃଦ୍ଧି କରିବା ଦିଗରେ ଆମେ ସମସ୍ତ ଉଦ୍ୟମ କରିବୁ ।

୨୫. ତେଣୁ ଆମେ ନିଷ୍ପତ୍ତି ନେଉଛୁ ଯେ

- ମାନବିକ ଅଧିକାର ସଂପର୍କିତ ସାର୍ବଜନୀନ ଘୋଷଣାକୁ ସଂପୂର୍ଣ୍ଣ ଭାବେ ସମ୍ମାନ କରିବା ସହିତ ଏହାକୁ ପାଳନ କରିବୁ ।
- ସବୁ ଦେଶରେ ସମସ୍ତଙ୍କର ନାଗରିକ, ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ସାଂସ୍କୃତିକ ଅଧିକାରକୁ ପୂର୍ଣ୍ଣ ସୁରକ୍ଷା ଯୋଗାଇ ଦେବା ସହିତ ଏସବୁ ଅଧିକାରକୁ ପ୍ରୋତ୍ସାହିତ କରିବୁ ।
- ଗଣତାନ୍ତ୍ରିକ ନୀତି ଓ ପ୍ରଥା ଲାଗୁ କରିବା ତଥା ସଂଖ୍ୟାଲଘୁଙ୍କ ଅଧିକାର ସମେତ ମାନବିକ ଅଧିକାର ପ୍ରତି ସମ୍ମାନ ବୃଦ୍ଧି କରିବା ପାଇଁ ସବୁ ଦେଶଙ୍କର କ୍ଷମତା ବୃଦ୍ଧି କରିବୁ ।
- ମହିଳାଙ୍କ ବିରୁଦ୍ଧରେ ସମସ୍ତ ପ୍ରକାରର ହିଂସାର ମୁକାବିଲା କରିବା ସହିତ

ସେମାନଙ୍କ ବିରୁଦ୍ଧରେ ସମସ୍ତ ପ୍ରକାର ବାଛ, ବିଚାର ଦୂରୀକରଣ ରାଜିନାମାକୁ କାର୍ଯ୍ୟକାରୀ କରିବୁ ।

- ଦାଦନ, ଦାଦନ ଶ୍ରମିକ ଓ ସେମାନଙ୍କ ପରିବାରବର୍ଗଙ୍କର ମାନବିକ ଅଧିକାରର ସମ୍ମାନ ଓ ସୁରକ୍ଷା, ବିଭିନ୍ନ ସମାଜରେ କ୍ରମବର୍ଦ୍ଧିଷ୍ଣ ବର୍ଣ୍ଣବୈଷମ୍ୟ ଓ ଅହେତୁକ ରାଷ୍ଟ୍ରବାଦ ଦ୍ୱାରା ପ୍ରେରିତ କାର୍ଯ୍ୟକଳାପର ନିରାକରଣ ଓ ସମସ୍ତ ସମାଜରେ ସୌହାର୍ଦ୍ଦ୍ୟ ଓ ସହନଶୀଳତା ବୃଦ୍ଧି ନିଶ୍ଚିତ କରିବା ପାଇଁ ପଦକ୍ଷେପମାନ ନେବୁ ।
- ଏଭଳି ରାଜନୈତିକ ପ୍ରକ୍ରିୟା ପାଇଁ କାର୍ଯ୍ୟ କରିବୁ, ଯାହା ସବୁ ଦେଶରେ ସବୁ ନାଗରିକଙ୍କୁ ଅଂଶଗ୍ରହଣ କରିବାର ସୁଯୋଗ ଦେବ ।
- ଗଣ ମାଧ୍ୟମ ଯେପରି ତାହାର ମୌଳିକ ଭୂମିକା ଠିକ୍ ଭାବରେ ତୁଲାଇ ପାରିବ ଓ ଜନସାଧାରଣଙ୍କର ସୂଚନା ପାଇବାର ଅଧିକାର ଯେପରି ସାବ୍ୟସ୍ତ ହୋଇ ପାରିବ, ତାହା ନିଶ୍ଚିତ କରିବୁ ।

## ୬) ଅସହାୟଙ୍କ ସୁରକ୍ଷା

୨୬. ପ୍ରାକୃତିକ ବିପର୍ଯ୍ୟୟ, ଗଣହତ୍ୟା, ସଶସ୍ତ୍ର ଯୁଦ୍ଧ ଓ ଅନ୍ୟାନ୍ୟ ମାନବୀୟ ଆପାତର ଅସମାନୁପାତିକ କୁପ୍ରଭାବ ଭୋଗୁଥିବା ଶିଶୁ ଓ ସମସ୍ତ ନାଗରିକଙ୍କୁ ସମସ୍ତ ସହାୟତା ଓ ସୁରକ୍ଷା ଯୋଗାଇ ଦେବୁ, ଯେପରିକି ସେମାନେ ଯଥାଶୀଘ୍ର ସ୍ୱାଭାବିକ ଜୀବନଯାପନ କରି ପାରିବେ ।

ତେଣୁ ଆମେ ନିଷ୍ପତ୍ତି ନେଉଛୁ ଯେ,

- ଆନ୍ତର୍ଜାତିକ ମାନବୀୟ ଆଇନ୍ ଅନୁଯାୟୀ ଜଟିଳ ଆପାତକାଳୀନ ପରିସ୍ଥିତିରେ ନାଗରିକଙ୍କ ସୁରକ୍ଷାକୁ ବ୍ୟାପକ ଓ ଅଧିକ ଶକ୍ତିଶାଳୀ କରିବୁ ।
- ଶରଣାର୍ଥୀଙ୍କୁ ଆଶ୍ରୟ ଦେଉଥିବା ରାଷ୍ଟ୍ରମାନଙ୍କ ଭାର ଲାଘବ ଓ ସେମାନଙ୍କୁ ମାନବୀୟ ସହାୟତା ପ୍ରଦାନ କ୍ଷେତ୍ରରେ ଆନ୍ତର୍ଜାତିକ ସହଯୋଗକୁ ଦୃଢ଼ୀଭୂତ କରିବୁ ତଥା ଶରଣାର୍ଥୀ ଓ ବିସ୍ଥାପିତ ବ୍ୟକ୍ତିମାନେ ଯେପରି ନିରାପଦ ଓ ସମ୍ମାନଜନକ ଭାବେ ନିଜ ଦେଶକୁ ଫେରିଯାଇ ନିଜ, ନିଜ ସମାଜରେ ସାମିଲ୍ ହୋଇପାରିବେ, ସେଥିପାଇଁ ସେମାନଙ୍କୁ ସାହାଯ୍ୟ କରିବୁ ।

- ଶିଶୁ ଅଧିକାର ରାଜିନାମା ତଥା ସଶସ୍ତ୍ର ଯୁଦ୍ଧରେ ଶିଶୁଙ୍କ ଅଂଶଗ୍ରହଣ, ଶିଶୁବିକ୍ରି, ଶିଶୁ ବେଶ୍ୟାବୃତ୍ତି ଓ ଯୌନୋଦ୍ଦୀପକ ଶିଶୁଚିତ୍ର ଆଦି ସମ୍ପର୍କିତ ଏହାର ଇଚ୍ଛାଧୀନ ବ୍ୟବସ୍ଥାଗୁଡ଼ିକର ଅନୁମୋଦନ ଓ ପୂର୍ଣ୍ଣ ରୂପାୟନକୁ ଉତ୍ସାହିତ କରିବୁ ।

## ୭) ଆଫ୍ରିକାର ବିଶେଷ ଆବଶ୍ୟକତା ପୂରଣ

୨୭. ଆମେ ଆଫ୍ରିକାରେ ଗଣତନ୍ତ୍ରର ସୁଦୃଢ଼ୀକରଣକୁ ସହଯୋଗ କରିବା ସହିତ ଚିରସ୍ଥାୟୀ ଶାନ୍ତି, ଦାରିଦ୍ର୍ୟ ଦୂରୀକରଣ ଓ ଦୀର୍ଘସ୍ଥାୟୀ ବିକାଶ ପାଇଁ ଆଫ୍ରିକାବାସୀଙ୍କ ସଂଗ୍ରାମରେ ସେମାନଙ୍କୁ ସହଯୋଗ କରିବୁ, ଯେପରିକି ଆଫ୍ରିକା ବିଶ୍ୱ ଅର୍ଥନୀତିର ମୁଖ୍ୟ ଧାରାରେ ସାମିଲ୍ ହୋଇପାରିବ ।

୨୮. ତେଣୁ ଆମେ ନିଷ୍ପତ୍ତି ନେଉଛୁ ଯେ,

- ଆଫ୍ରିକାରେ ନୂତନ ଗଣତନ୍ତ୍ରଗୁଡ଼ିକର ରାଜନୈତିକ ଓ ଆନୁଷ୍ଠାନିକ ଢ଼ାଞ୍ଚାକୁ ପୂର୍ଣ୍ଣ ସହଯୋଗ କରିବୁ ।
- ସଂଘର୍ଷ ବିରତି ଓ ରାଜନୈତିକ ସ୍ଥିରତା ବାହାଲ କରିବା ପାଇଁ ଆଞ୍ଚଳିକ ଓ ଉପ ଆଞ୍ଚଳିକ ବ୍ୟବସ୍ଥାକୁ ଉତ୍ସାହିତ ଓ ଦୀର୍ଘସ୍ଥାୟୀ କରିବା ସହିତ ମହାଦେଶରେ ଶାନ୍ତିରକ୍ଷା ପାଇଁ ନିର୍ଭରଯୋଗ୍ୟ ସମ୍ବଳର ବନ୍ଦୋବସ୍ତ କରିବୁ ।
- ଆଫ୍ରିକାରେ ଦାରିଦ୍ର୍ୟ ଦୂରୀକରଣ ଓ ଦୀର୍ଘସ୍ଥାୟୀ ବିକାଶର ଆହ୍ୱାନକୁ ସାମନା କରିବା ପାଇଁ ଋଣଛାଡ଼, ଉନ୍ନତ ବଜାର ବ୍ୟବସ୍ଥା, ଅଧିକ ଔପଚାରିକ ବିକାଶ ସହାୟତା, ବର୍ଦ୍ଧିତ ପ୍ରତ୍ୟକ୍ଷ ବିଦେଶୀ ପୁଞ୍ଜିଲଗାଣ ଓ କାରିଗରୀ କୌଶଳର ହସ୍ତାନ୍ତର ଆଦି ବିଶେଷ ପଦକ୍ଷେପ ନେବୁ ।
- ଏଚ୍ଆଇଭି ଓ ଅନ୍ୟ ସଂକ୍ରାମକ ରୋଗର ପ୍ରସାରକୁ ରୋକିବା ଦିଗରେ ଆଫ୍ରିକାର ସାମର୍ଥ୍ୟ ବୃଦ୍ଧି କରିବୁ ।

## ୮) ଜାତିସଂଘର ସୁଦୃଢ଼ୀକରଣ

୨୯. ନିମ୍ନୋକ୍ତ ଲକ୍ଷ୍ୟ ହାସଲ ଦିଗରେ ଜାତିସଂଘକୁ ଏକ ଅଧିକ ଫଳପ୍ରଦ ଅନୁଷ୍ଠାନ ଭାବେ ଗଢ଼ି ତୋଳିବା ପାଇଁ ଆମେ ସମସ୍ତ ଉଦ୍ୟମ କରିବୁ ।

- ବିଶ୍ୱର ସବୁ ଲୋକଙ୍କର ବିକାଶ ପାଇଁ ସଂଗ୍ରାମ; ଦାରିଦ୍ର୍ୟ, ଅଜ୍ଞାନତା ଓ ବ୍ୟାଧି ସହିତ ସଂଗ୍ରାମ; ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ; ହିଂସା, ସନ୍ତ୍ରାସବାଦ ଓ ଅପରାଧ ବିରୁଦ୍ଧରେ ସଂଗ୍ରାମ ତଥା ଆମ ସାମୁହିକ ବାସସ୍ଥାନର ଅବକ୍ଷୟ ଓ ଧ୍ୱଂସ ବିରୁଦ୍ଧରେ ସଂଗ୍ରାମ ।

୩୦. ତେଣୁ ଆମେ ନିଷ୍ପତ୍ତି ନେଇଛୁ ଯେ,

- ଜାତିସଂଘର ପ୍ରମୁଖ ବିଚାର, ବିମର୍ଶ, ନୀତି ନିର୍ଦ୍ଧାରଣ ଓ ପ୍ରତିନିଧିମୂଳକ ଅଙ୍ଗ ଭାବେ ସାଧାରଣ ପରିଷଦର କେନ୍ଦ୍ରୀୟ ଭୂମିକା ଉପରେ ପୁନଃ ଆସ୍ଥା ପ୍ରକଟ କରିବା ସହିତ ଏହି ଭୂମିକା ସଫଳ ଭାବେ ନିର୍ବାହ କରିବା ପାଇଁ ପରିଷଦକୁ ସକ୍ଷମ କରିବୁ ।
- ନିରାପତ୍ତା ପରିଷଦର ସର୍ବାଙ୍ଗୀନ ଓ ଆମୂଳଚୂଳ ସଂସ୍କାର ଦିଗରେ ଆମର ଉଦ୍ୟମକୁ ଆହୁରି ବ୍ୟାପକ କରିବୁ ।
- ନିକଟ ଅତୀତରେ ଅର୍ଥନୈତିକ ଓ ସାମାଜିକ ପରିଷଦ ହାସଲ କରିଥିବା ସଫଳତାକୁ ପୁଞ୍ଜିକରି ଏହାକୁ ଆହୁରି ଦୃଢ଼ କରିବୁ, ଯେପରିକି ଏହା ସନନ୍ଦରେ ନିର୍ଦ୍ଧାରିତ ନିଜର ଭୂମିକା ନିର୍ବାହ କରିପାରିବ ।
- ଆନ୍ତର୍ଜାତିକ ବ୍ୟାପାରରେ ନ୍ୟାୟ ଓ ଆଇନ୍‌ର ଶାସନକୁ ସୁନିଶ୍ଚିତ କରିବା ପାଇଁ ଆନ୍ତର୍ଜାତିକ ନ୍ୟାୟାଳୟକୁ ଆହୁରି ସୁଦୃଢ଼ କରିବୁ ।
- ଜାତିସଂଘର ବିଭିନ୍ନ ପ୍ରମୁଖ ଅଙ୍ଗଗୁଡ଼ିକ ଯେପରି ନିଜ ନିଜର ଭୂମିକା ସୂଚାରୁ ରୂପେ ନିର୍ବାହ କରି ପାରିବେ, ସେଥିପାଇଁ ସେଗୁଡ଼ିକ ମଧ୍ୟରେ ନିୟମିତ ଆଲୋଚନା ଓ ସଂଯୋଜନାକୁ ଉତ୍ସାହିତ କରିବୁ ।
- ଜାତିସଂଘ ସଂଗଠନର ବିଭିନ୍ନ ଲକ୍ଷ୍ୟ ହାସଲ ପାଇଁ ଆବଶ୍ୟକ ସମ୍ବଳ ଯେପରି ନିୟମିତ ଓ ଅବଧାରିତ ଭାବେ ମିଳେ, ତାହା ନିଶ୍ଚିତ କରିବୁ ।
- ସଦସ୍ୟ ରାଷ୍ଟ୍ରମାନଙ୍କର ସ୍ୱାର୍ଥରକ୍ଷା ପାଇଁ ସାଧାରଣ ପରିଷଦ ଦ୍ୱାରା ଅନୁମୋଦିତ ନିୟମ ଓ ପଦ୍ଧତି ଭିତ୍ତିରେ ଶ୍ରେଷ୍ଠ ପରିଚାଳନା ପଦ୍ଧତି ଓ କାରିଗରୀ କୌଶଳ ଅବଲମ୍ବନ କରି ତଥା ସଦସ୍ୟ ରାଷ୍ଟ୍ରମାନଙ୍କ ସର୍ବସମ୍ମତ ପ୍ରାଥମିକତାଗୁଡ଼ିକର ସ୍ୱାକ୍ଷର ବହନ କରୁଥିବା କାର୍ଯ୍ୟଗୁଡ଼ିକୁ ଅଗ୍ରାଧିକାର ଭିତ୍ତିରେ ହାତକୁ ନେଇ ଏହି ସମ୍ବଳର ସମୁଚିତ ବିନିଯୋଗ ପାଇଁ ଜାତିସଂଘ ସଚିବାଳୟକୁ ଅନୁରୋଧ କରିବୁ ।

• ଜାତିସଂଘ ଓ ଏହାର ସହଯୋଗୀ ସଂଗଠନଗୁଡ଼ିକର କର୍ମକର୍ତ୍ତାଙ୍କ ସୁରକ୍ଷା ସମ୍ବନ୍ଧୀୟ ରାଜିନାମାର ପାଳନକୁ ଉତ୍ସାହିତ କରିବୁ ।
• ଶାନ୍ତି ଓ ବିକାଶର ଲକ୍ଷ୍ୟ ସାଧନ ଦିଗରେ ଏକ ସୁସଂଯୋଜିତ ଅଭିଯାନ ପାଇଁ ଜାତିସଂଘ ଓ ଏହାର ସଂଗଠନ, ବ୍ରେଟନ୍ ଉଡ୍ସ୍ ଅନୁଷ୍ଠାନ, ବିଶ୍ୱ ବାଣିଜ୍ୟ ସଂଗଠନ ଓ ଅନ୍ୟ ବହୁଦେଶୀୟ ସଂଗଠନଗୁଡ଼ିକ ମଧ୍ୟରେ ଅଧିକ ନୀତିଗତ ସାମଞ୍ଜସ୍ୟ ଓ ସହଯୋଗ ନିଶ୍ଚିତ କରିବୁ ।
• ଶାନ୍ତି ଓ ସୁରକ୍ଷା, ଅର୍ଥନୈତିକ ଓ ସାମାଜିକ ବିକାଶ, ଆନ୍ତର୍ଜାତିକ ଆଇନ୍ ଓ ମାନବିକ ଅଧିକାର, ଗଣତନ୍ତ୍ର ଓ ଲିଙ୍ଗଗତ ପ୍ରସଙ୍ଗ ସମେତ ବିଭିନ୍ନ କ୍ଷେତ୍ରରେ ଜାତିସଂଘ ଓ ରାଷ୍ଟ୍ରୀୟ ସଂସଦମାନଙ୍କର ପ୍ରତିନିଧିମୂଳକ ସଂଗଠନ 'ଆନ୍ତଃ-ସଂସଦୀୟ ସଂଗଠନ' ମଧ୍ୟରେ ସହଯୋଗ ବୃଦ୍ଧି କରିବୁ ।
• ଜାତିସଂଘର ଲକ୍ଷ୍ୟ ଓ କାର୍ଯ୍ୟକ୍ରମ ପୂରଣ ଦିଗରେ ସହଯୋଗ କରିବା ପାଇଁ ଘରୋଇ କ୍ଷେତ୍ର, ସ୍ୱେଚ୍ଛାସେବୀ ସଂଗଠନ ଓ ନାଗରିକ ସମାଜକୁ ଅଧିକରୁ ଅଧିକ ସୁଯୋଗ ଦେବୁ ।

୩୧. ଏହି ଘୋଷଣାର ବିଭିନ୍ନ ବ୍ୟବସ୍ଥା କାର୍ଯ୍ୟକାରୀ କରିବା ଦିଗରେ ହୋଇଥିବା ପ୍ରଗତିକୁ ନିୟମିତ ସମୀକ୍ଷା କରିବା ପାଇଁ ଆସେ ସାଧାରଣ ପରିଷଦକୁ ଅନୁରୋଧ କରୁଛୁ । ଏ ବିଷୟରେ ସାଧାରଣ ପରିଷଦରେ ବିଚାର ବିମର୍ଶ ପାଇଁ ତଥା ଭବିଷ୍ୟତ କାର୍ଯ୍ୟପନ୍ଥା ନିର୍ଦ୍ଧାରଣର ଆଧାର ସ୍ୱରୂପ ନିୟମିତ ରିପୋର୍ଟ ଜାରି କରିବା ପାଇଁ ଆମେ ମହାସଚିବଙ୍କୁ ଅନୁରୋଧ କରୁଛୁ ।

ଏହି ଐତିହାସିକ ଅବସରରେ ଆମେ ଆଉଥରେ ସ୍ପଷ୍ଟ କରୁଛୁ ଯେ ଜାତିସଂଘ ହେଉଛି ସମଗ୍ର ମାନବ ପରିବାରର ଅପରିହାର୍ଯ୍ୟ ସାମୁହିକ ନିବାସ, ଯାହା ଜରିଆରେ ଆମେ ଶାନ୍ତି, ସହଯୋଗ ଓ ବିକାଶର ସାର୍ବଜନୀନ ଲକ୍ଷ୍ୟ ପୂରଣ ପାଇଁ ଉଦ୍ୟମ କରିବୁ । ତେଣୁ ଆମେ ଏହିସବୁ ସାମୁହିକ ଲକ୍ଷ୍ୟ ଏବଂ ଏସବୁ ହାସଲ ପାଇଁ ଆମର ଅଙ୍ଗୀକାର ପ୍ରତି ନିଜର ଅତୁଟ ସମର୍ଥନ ପ୍ରକଟ କରୁଛୁ ।

*୮ମ ପୂର୍ଣ୍ଣାଙ୍ଗ ବୈଠକ*
*୮ ସେପ୍ଟେମ୍ବର, ୨୦୦୦*



# ସହସ୍ରାବ୍ଦର ଲକ୍ଷ୍ୟ ଏବଂ ଆମେମାନେ

ମିଳିତ ଜାତିସଂଘର ଉଦ୍ୟମରେ ୨୦୦୦ ମସିହାରେ ୧୮୯ଟି ଦେଶର ରାଷ୍ଟ୍ରମୁଖ୍ୟ ଓ ପ୍ରତିନିଧିଙ୍କୁ ନେଇ ଶହସ୍ରାବ୍ଦର ଶିଖର ସମ୍ମିଳନୀ ୮ଟି ଲକ୍ଷ୍ୟକୁ ୨୦୧୫ ସୁଦ୍ଧା ହାସଲ କରିବା ପାଇଁ ଶପଥ ନିଆଯାଇଥିଲା । ଏହି ଆଠଟି ଲକ୍ଷ୍ୟ ଏବଂ ଏଗୁଡ଼ିକ ହାସଲ ହେଲା କି' ନାହିଁ ତାହା ମାପିବା ପାଇଁ ସୂଚକଗୁଡ଼ଇକ ନିମ୍ନରେ ଉଲ୍ଲେଖ କରାଗଲା ।

## ସହସ୍ରାବ୍ଦର ଲକ୍ଷ୍ୟ ଓ ସେଗୁଡ଼ିକର ସୂଚକ

### ଲକ୍ଷ୍ୟ ୧ : ଦାରିଦ୍ର୍ୟ ଦୂରୀକରଣ

୨୦୧୫ ସୁଦ୍ଧା କ'ଣ ହାସଲ କରାଯିବ

*ଦୈନିକ ୫୦ ଟଙ୍କାରୁ କମ୍‌ରେ ଗୁଜରାଣ ମେଣ୍ଟାଉଥିବା ଲୋକଙ୍କ ସଂଖ୍ୟା ଅଧା କମାଇବା*

ସୂଚକ :

- ଦୈନିକ ଗୋଟିଏ ଡଲାର (ବର୍ତ୍ତମାନର ମୂଲ୍ୟାରେ ୪୦ ଟଙ୍କା)ରୁ କମ୍‌ରେ ଚଳୁଥିବା ଲୋକଙ୍କ ସଂଖ୍ୟା
- ଦାରିଦ୍ର୍ୟର ଅନୁପାତ (ଦାରିଦ୍ର୍ୟର ବ୍ୟାପ୍ତି ଓ ତୀବ୍ରତା)
- ଅପେକ୍ଷାକୃତ କମ୍ ଓଜନ ବିଶିଷ୍ଟ ୫ ବର୍ଷରୁ କମ୍ ବୟସ୍କ ଶିଶୁମାନଙ୍କର ଅନୁପାତ

*କ୍ଷୁଧାରେ ଥିବା ଲୋକଙ୍କ ସଂଖ୍ୟା ଅଧାକୁ କମାଇବା*

ସୂଚକ :

- ପାଞ୍ଚ ବର୍ଷରୁ କମ୍ ବୟସର କମ୍ ଓଜନ ବିଶିଷ୍ଟ ଶିଶୁଙ୍କ ଅନୁପାତ
- କମ୍ କ୍ୟାଲୋରୀଯୁକ୍ତ, ଖାଦ୍ୟ ଗ୍ରହଣ କରୁଥିବା ଲୋକମାନଙ୍କର ଅନୁପାତ

## ଲକ୍ଷ୍ୟ ୨: ସାର୍ବଜନୀନ ପ୍ରାଥମିକ ଶିକ୍ଷା

<u>୨୦୧୫ ସୁଦ୍ଧା କ'ଣ ହାସଲ କରାଯିବ</u>

*ସବୁ ପୁଅଝିଅମାନେ ଯେପରି ପ୍ରାଥମିକ ଶିକ୍ଷା ସଂପୂର୍ଣ୍ଣ କରିବେ, ତାହା ନିଧାର୍ଯ୍ୟ କରିବା*

ସୂଚକ:

- ପ୍ରାଥମିକ ଶିକ୍ଷା ପାଇଁ ନାମ ଲେଖାଯାଇଥିବା ଶିଶୁଙ୍କ ସଂଖ୍ୟା
- ପ୍ରଥମ ଶ୍ରେଣୀରୁ ୫ମ ଶ୍ରେଣୀ ପର୍ଯ୍ୟନ୍ତ ପାଠପଢୁଥିବା ଶିଶୁଙ୍କ ମଧ୍ୟରୁ ପାଠ ଛାଡୁଥିବା ଶିଶୁଙ୍କ ସଂଖ୍ୟା
- ୧୫ରୁ ୨୪ ବର୍ଷ ବୟସ୍କ ଶିକ୍ଷାର୍ଥୀଙ୍କ ସଂଖ୍ୟା

## ଲକ୍ଷ୍ୟ ୩: ଲିଙ୍ଗଭିତ୍ତିକ ବୈଷମ୍ୟ ଦୂରକରିବା ଏବଂ ମହିଳା ସଶକ୍ତିକରଣ

<u>୨୦୧୫ ସୁଦ୍ଧା କ'ଣ ହାସଲ କରାଯିବ</u>

*୨୦୦୫ ସୁଦ୍ଧା ପ୍ରାଥମିକ ତଥା ମାଧ୍ୟମିକ ଶିକ୍ଷା କ୍ଷେତ୍ରରେ ଲିଙ୍ଗଭିତ୍ତିକ ବୈଷମ୍ୟ ଦୂରକରିବା ଏବଂ ୨୦୧୫ ସୁଦ୍ଧା ସମସ୍ତ କ୍ଷେତ୍ରରେ ଲିଙ୍ଗଭିତ୍ତିକ ବୈଷମ୍ୟ ଦୂରକରିବା ।*

ସୂଚକ:

- ପ୍ରାଥମିକ, ମାଧ୍ୟମିକ ଓ ଉଚ୍ଚ ମାଧ୍ୟମିକ ଶିକ୍ଷାରେ ବାଳକ ଏବଂ ବାଳିକାଙ୍କ ଅନୁପାତ ଓ ସଂଖ୍ୟା
- ୧୫ରୁ ୨୪ ବର୍ଷ ବୟସ୍କ ଶିକ୍ଷିତ ମହିଳା ଓ ପୁରୁଷଙ୍କ ମଧ୍ୟରେ ମହିଳାଙ୍କ ହାର
- ଅଣକୃଷିଭିତ୍ତିକ କାର୍ଯ୍ୟରେ ମହିଳାଙ୍କ ଅନୁପାତ
- ପାର୍ଲ୍ୟାମେଣ୍ଟରେ ମହିଳାଙ୍କ ସ୍ଥାନ ସଂରକ୍ଷଣର ହାର

## ଲକ୍ଷ୍ୟ ୪: ଶିଶୁ ମୃତ୍ୟୁହାର କମାଇବା

<u>୨୦୧୫ ସୁଦ୍ଧା କ'ଣ ହାସଲ କରାଯିବ</u>

*ପାଞ୍ଚବର୍ଷରୁ କମ୍ ଶିଶୁମାନଙ୍କ କ୍ଷେତ୍ରରେ ମୃତ୍ୟୁହାର ଦୁଇତୃତୀୟାଂଶ କମାଇବା ।*

ସୂଚକ :

- ୫ବର୍ଷ ରୁ କମ୍ ଶିଶୁଙ୍କ ମୃତ୍ୟୁହାର
- ଶିଶୁ ମୃତ୍ୟୁହାର
- ମିଳିମିଳା ପ୍ରତିଷେଧକ ଟିକା ନେଇଥିବା ୧ ବର୍ଷରୁ କମ୍ ଶିଶୁଙ୍କ ହାର

## ଲକ୍ଷ୍ୟ ୫ : ମାତୃସ୍ୱାସ୍ଥ୍ୟରେ ଉନ୍ନତି

୨୦୧୫ ସୁଦ୍ଧା କ'ଣ ହାସଲ କରାଯିବ

*ପିଲା ଜନ୍ମବେଳେ ମୃତ୍ୟୁବରଣ କରୁଥିବା ମା' ମାନଙ୍କ ସଂଖ୍ୟା ତିନି ଚତୁର୍ଥାଂଶ କମାଇବା ।*

ସୂଚକ :

- ମାତୃ ମୃତ୍ୟୁହାରର ଅନୁପାତ
- ତାଲିମପ୍ରାପ୍ତ ଧାଇଙ୍କ ଦ୍ୱାରା ଜନ୍ମ ନେଇଥିବା ଶିଶୁଙ୍କ ହାର

## ଲକ୍ଷ୍ୟ ୬: ଏଚ୍.ଆଇ.ଭି./ଏଡସ୍, ମ୍ୟାଲେରିଆ ଓ ଅନ୍ୟାନ୍ୟ ରୋଗର ମୁକାବିଲା

୨୦୧୫ ସୁଦ୍ଧା କ'ଣ ହାସଲ କରାଯିବ

*ଏଚ୍.ଆଇ.ଭି./ଏଡସ୍‌ର ସଂକ୍ରମଣକୁ ରୋକିବା ଏବଂ ଏହାକୁ ବିପରୀତମୁଖୀ କରିବା ।*

ସୂଚକ :

- ୧୫ରୁ ୨୪ ବର୍ଷ ମଧ୍ୟରେ ଏଚ୍.ଆଇ.ଭି ଦ୍ୱାରା ପ୍ରଭାବିତ ହୋଇଥିବା ଗର୍ଭବତୀ ମହିଳାଙ୍କ ହାର
- କଣ୍ଡୋମ ବ୍ୟବହାର କରୁଥିବା ଅତ୍ୟଧିକ ବିପଦସଙ୍କୁଳ ଗୋଷ୍ଠୀଙ୍କ ହାର
- ପ୍ରତିଶେଧକ ବ୍ୟବସ୍ଥା ପାଇଁ ବ୍ୟବହୃତ କଣ୍ଡୋମର ହାର
- ଏଚ୍‌ଆଇଭି/ଏଡସ୍ ସଂପର୍କରେ ଉପଯୁକ୍ତ ଓ ବ୍ୟାପକ ଜ୍ଞାନ ପାଇଥିବା ୧୫ରୁ ୨୪ ବର୍ଷ ବୟସ୍କ ଜନସଂଖ୍ୟାଙ୍କ ହାର
- ଜନ୍ମ ନିୟନ୍ତ୍ରଣ ବ୍ୟବସ୍ଥା ଗ୍ରହଣ କରିଥିବା ଜନସଂଖ୍ୟାଙ୍କ ହାର
- ବିଦ୍ୟାଳୟକୁ ଯାଉଥିବା ୧୦ରୁ ୧୪ବର୍ଷ ବୟସ୍କ ଅନାଥ ଶିଶୁ ଓ ସାଧାରଣ ଶିଶୁଙ୍କ ହାର

*ମ୍ୟାଲେରିଆ ଓ ଅନ୍ୟାନ୍ୟ ମୁଖ୍ୟ ରୋଗଗୁଡ଼ିକର ସଂକ୍ରମଣକୁ ରୋକିବା ଓ ବିପରୀତମୁଖୀ କରିବା*

ସୂଚକ :

- ମ୍ୟାଲେରିଆ ପ୍ରବଣ ଅଞ୍ଚଳରେ ପ୍ରତିଷେଧକ ବ୍ୟବସ୍ଥା ଗ୍ରହଣ କରିଥିବା ଓ ଚିକିତ୍ସା ପାଉଥିବା ଜନସଂଖ୍ୟାଙ୍କ ହାର
- ମ୍ୟାଲେରିଆରେ ମୃତ୍ୟୁବରଣ କରୁଥିବା ଲୋକଙ୍କ ଅନୁପାତ
- ଯକ୍ଷ୍ମାରେ ମୃତ୍ୟୁବରଣ କରୁଥିବା ଲୋକଙ୍କ ହାର
- ଆନ୍ତର୍ଜାତିକ ଯକ୍ଷ୍ମା ନିୟନ୍ତ୍ରଣ ଯୋଜନା/ଡଟସ୍ ଦ୍ୱାରା ସୁସ୍ଥ ହୋଇଥିବା ଓ ଚିହ୍ନଟ କରାଯାଉଥିବା ଯକ୍ଷ୍ମାରୋଗୀଙ୍କ ସଂଖ୍ୟା

**ଲକ୍ଷ୍ୟ ୭ : ଦୀର୍ଘକାଳୀନ ଭିତ୍ତିରେ ପରିବେଶ ବଜାୟ ରହିବାକୁ ନିଧାର୍ଯ୍ୟ କରିବା**

ଦ୍ୱାରା ୨୦୧୫ ସୁଦ୍ଧା କ'ଣ ହାସଲ କରାଯିବ

*ଦେଶଗୁଡ଼ିକର ନୀତିରେ ସହନଶୀଳ ବିକାଶର ନୀତିକୁ ସମନ୍ୱିତ କରିବା ଏବଂ ପାରିବେଶିକ ସମ୍ବଳଗୁଡ଼ିକର କ୍ଷୟକୁ ରୋକିବା ।*

ସୂଚକ :

- ଜଙ୍ଗଲ ଜମିର ହାର/ଜଙ୍ଗଲ ଦ୍ୱାରା ଆଚ୍ଛାଦିତ ଜମିର ପରିମାଣ
- ଜୈବ ବିବିଧତା ପାଇଁ ସୁରକ୍ଷିତ ଜମିର ହାର
- ଶକ୍ତିର ବ୍ୟବହାର
- ଓଜନସ୍ତରକୁ କ୍ଷତିଗ୍ରସ୍ତ କରୁଥିବା ଅଙ୍ଗାରକାମ୍ଳର ପରିମାଣ/ହାର
- ବର୍ଜ୍ୟବସ୍ତୁକୁ ଜାଳେଣି ପାଇଁ ବ୍ୟବହାର କରୁଥିବା ଜନସଂଖ୍ୟାର ପରିମାଣ

*୨୦୧୫ ସୁଦ୍ଧା ଦୀର୍ଘକାଳୀନ ଭିତ୍ତିରେ ନିରାପଦ ପାନୀୟ ଜଳ ପାଉନଥିବା ଲୋକମାନଙ୍କ ସଂଖ୍ୟା ଅଧା କରିବା ।*

ସୂଚକ :

- ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ରହୁଥିବା ଜନସଂଖ୍ୟାଙ୍କ ଦ୍ୱାରା ବ୍ୟବହୃତ ଜଳର ପରିମାଣ
- ପରିମଳ ସେବା ବ୍ୟବହାର କରୁଥିବା ଗ୍ରାମାଞ୍ଚଳ ଓ ସହରାଞ୍ଚଳରେ ରହୁଥିବା ଜନସଂଖ୍ୟା

*୨୦୨୦ ସୁଦ୍ଧା ୧୦ କୋଟି ବସ୍ତିବାସିନ୍ଦାଙ୍କ ଜୀବନ ଧାରଣ ମାନରେ ଉନ୍ନତି ଘଟାଇବା ।*

ସୂଚକ :

- ନିଜଘର ବା ଭଡ଼ାସୂତ୍ରରେ ରହୁଥିବା ଜନସଂଖ୍ୟାର ହାର

## ଲକ୍ଷ୍ୟ ୮ : ବିକାଶ ପାଇଁ ବିଶ୍ୱସ୍ତରୀୟ ସହଭାଗିତା

- ଅନୁନ୍ନତ ଦେଶମାନଙ୍କରେ ଥିବା ଦରିଦ୍ର ଲୋକମାନଙ୍କୁ ବିକାଶମୁଖୀ କରିବା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କରିବା ଯେଉଁଥିରେ ଭବିଷ୍ୟତ ପାଇଁ ଆର୍ଥିକ, ବ୍ୟବସାୟିକ ଓ ଉତ୍ତମ ଶାସନ ଅନ୍ତର୍ଭୁକ୍ତ । ଦାରିଦ୍ର୍ୟ ମୁକ୍ତି ପାଇଁ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ପକ୍ଷପାତ ରହିତ ବହୁମୁଖୀ ବ୍ୟବସାୟ, ଆର୍ଥିକ ବ୍ୟବସ୍ଥା ପ୍ରତି ଧ୍ୟାନ ଦେବା ।
- କମ୍ ବିକଶିତ ଦେଶଗୁଡ଼ିକରେ ରପ୍ତାନୀ କରୁଥିବା ସମସ୍ତ ଦ୍ରବ୍ୟକୁ ଶୁଳ୍କ, କୋଟାରହିତ ଓ ଦ୍ୱିପାକ୍ଷିକ ବୁଝାମଣା ସହ ଋଣଭାର ଲାଘବ ଓ ଦାରିଦ୍ର୍ୟ ନିରାକରଣ ପାଇଁ ଆଞ୍ଚଳିକ ସମ୍ବଳର ବିକାଶ ଓ ବ୍ୟବହାର ଦିଗରେ ଉଦ୍ୟମ କରିବା ସହ ସେମାନଙ୍କୁ ଅଧିକ ବଦାନ୍ୟତା ପ୍ରଦର୍ଶନ କରିବା ।
- ମୁଖ୍ୟ ଆବଶ୍ୟକତାଗୁଡ଼ିକୁ ଠିକ୍ ଭାବରେ ସମ୍ବୋଧନ କରିବା ସହ ସହସ୍ରାବ୍ଦର ସମସ୍ତ ପ୍ରସ୍ତାବଗୁଡ଼ିକୁ କ୍ଷୁଦ୍ର, ବିକାଶଶୀଳ ଦ୍ୱୀପ ରାଷ୍ଟ୍ରଗୁଡ଼ିକରେ ବିଶେଷ ଆବଶ୍ୟକତା ପୂରଣ କରିବା ପାଇଁ ୨୨ତମ ବିଶେଷ ଅଧିବେଶନରେ ନିଷ୍ପତ୍ତି ନିଆଯାଇଥିଲା ।
- ବିକାଶଶୀଳ ରାଷ୍ଟ୍ରଗୁଡ଼ିକରେ ଆବଶ୍ୟକତା ଓ ଅସୁବିଧାଗୁଡ଼ିକୁ ହୃଦୟଙ୍ଗମ କରିବା ସହ ସେହି ରାଷ୍ଟ୍ରମାନଙ୍କୁ ଆର୍ଥିକ ଓ ବୈଷୟିକ ସହାୟତା ବୃଦ୍ଧି ପାଇଁ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ପ୍ରଚେଷ୍ଟା କରିବାର ଆବଶ୍ୟକତା ରହିଅଛି ।
- ଉନ୍ନତ ରାଷ୍ଟ୍ରର ସହାୟତାରେ ବିକାଶ ଓ ନୂତନ ନୀତି ପ୍ରଣୟନ କରି ଯୁବବର୍ଗଙ୍କୁ ସମ୍ମାନଜନକ ଓ ଲାଭଦାୟକ କର୍ମରେ ନିଯୁକ୍ତି କରିବା ।
- ବିକାଶଶୀଳ ରାଷ୍ଟ୍ରମାନଙ୍କରେ ଜୀବନରକ୍ଷକ ଔଷଧଗୁଡ଼ିକ ବହୁଳ ଭାବରେ ଓ ସୁଲଭ ମୂଲ୍ୟରେ ଉପଲବ୍ଧ କରିବା ପାଇଁ ଔଷଧ କମ୍ପାନୀମାନଙ୍କୁ ଅନୁରୋଧ କରିବା ।
- ଘରୋଇ ଅନୁଷ୍ଠାନମାନଙ୍କୁ ଦାରିଦ୍ର୍ୟ ଦୂରୀକରଣ ଲକ୍ଷ୍ୟ ହାସଲ ପାଇଁ ମୂଳତଃ ସୂଚନା ଓ ପ୍ରସାରଣ ଦିଗରେ ଭାଗୀଦାରି କରିବା ।



# ସହସ୍ରାବ୍ଦର ଲକ୍ଷ୍ୟ ପୃଷ୍ଠଭୂମିରେ କିଛି ବିଶ୍ୱ ପରିସଂଖ୍ୟାନ

**ଲକ୍ଷ୍ୟ-୧ : ଦାରିଦ୍ର୍ୟ ଦୂରୀକରଣ**

- ସଂପ୍ରତି ବିଶ୍ୱରେ ପ୍ରତିବର୍ଷ ମୃତ୍ୟୁବରଣ କରୁଥିବା ଲୋକସଂଖ୍ୟା ମଧ୍ୟରୁ ଏକ ତୃତୀୟାଂଶ କେବଳ ଦାରିଦ୍ର୍ୟ ଓ କ୍ଷୁଧା ଯୋଗୁଁ ମରିଥାନ୍ତି । ବିଶ୍ୱରେ ଦୈନିକ ପ୍ରାୟ ୫୦,୦୦୦ ଲୋକ ଦାରିଦ୍ର୍ୟ ଓ କ୍ଷୁଧା ଯୋଗୁଁ ମୃତ୍ୟୁବରଣ କରନ୍ତି । ୧ କୋଟି ୮୦ ଲକ୍ଷ ଲୋକେ ଏହି ଶ୍ରେଣୀରେ ଅନ୍ତର୍ଭୁକ୍ତ । (ରିୟଲିଟି ଅଫ୍ ଏଡ୍, ୨୦୦୪)
- ବିଶ୍ୱରେ ପ୍ରତି ୩ ସେକେଣ୍ଡରେ ଜଣେ କରି, ଦିନକୁ ୩୦,୦୦୦ ଶିଶୁ ମୃତ୍ୟୁବରଣ କରନ୍ତି । ଏହିପରି ଭାବରେ କ୍ଷୁଧା ଓ ରୋଗ ପ୍ରତିଶେଧକ ଅଭାବରୁ ବର୍ଷକୁ ଏକକୋଟି ଶିଶୁ ମୃତ୍ୟୁବରଣ କରନ୍ତି । (ଏଇଟ୍ କ୍ରୋର୍ ଲାଇଭସ୍, ୨୦୦୩/ବ୍ରେଡ୍ ଫର୍ ଦି ୱାର୍ଲଡ/ୟୁନିସେଫ୍/ୱାର୍ଲଡ ହେଲ୍‌ଥ୍ ଅର୍ଗାନାଇଜେସନ୍)
- ୧୦୦ କୋଟି ବା ତତୋଧିକ ଲୋକ ଦୈନିକ ଗୋଟିଏ ଡଲାରରୁ କମ୍‌ରେ ଚଳୁଥିବାବେଳେ, ପ୍ରାୟତଃ ବିଶ୍ୱର ଅର୍ଦ୍ଧେକ ଜନସଂଖ୍ୟା (୨୮୦ କୋଟି) ଦୈନିକ ଦୁଇ ଡଲାରରୁ କମ୍‌ରେ ନିଜର ଗୁଜରାଣ ମେଣ୍ଟାଇଥାନ୍ତି । (ୟୁଏନ୍‌ଏଚ୍‌ଡିଆର୍, ୨୦୦୩)
- ଦାରିଦ୍ର୍ୟ ଓ କ୍ଷୁଧାରେ ବିଶ୍ୱର ୬୦ କୋଟି ଶିଶୁ ବଞ୍ଚୁଥାନ୍ତି (ବିଟପୋଭର୍ଟି, ଏସ୍‌ସିଏଫ୍, ୨୦୦୩)
- ବିଶ୍ୱର ତିନୋଟି ଧନୀ ଲୋକଙ୍କ ପାଖରେ ଥିବା ସମ୍ପତ୍ତିର ପରିମାଣ, ଗରିବ ରାଷ୍ଟ୍ରରେ ଥିବା ୬୦ କୋଟି ଲୋକଙ୍କ ସମୁଦାୟ ସମ୍ପତ୍ତିର ପରିମାଣ ସହ ପ୍ରାୟତଃ ସମାନ । (ଖ୍ରୀଷ୍ଟିଆନ୍ ଏଡ୍)
- ଗତ ୨୦ ବର୍ଷ ମଧ୍ୟରେ ଆଫ୍ରିକାରେ ଥିବା ଲୋକମାନଙ୍କ ରୋଜଗାର ପ୍ରାୟ ୨୫% କମିଥିବା ଜଣାଯାଇଛି । (ଖ୍ରୀଷ୍ଟିଆନ୍ ଏଡ୍)
- ପ୍ରତ୍ୟେକ ଦିନ ୮୦ କୋଟି ଲୋକ ଖାଲିପେଟରେ ଶୁଅନ୍ତି । (ଏଫ୍‌ଏଓ)
- ପ୍ରତ୍ୟେକ ବର୍ଷ ପଞ୍ଚମ ଜନ୍ମଦିନ ପାଳନ ପୂର୍ବରୁ ପ୍ରାୟତଃ ୧ କୋଟି ୧୦ ଲକ୍ଷ ଶିଶୁ ମୃତ୍ୟୁବରଣ କରିଥାନ୍ତି । (ୟୁନିସେଫ୍)

**ଲକ୍ଷ୍ୟ-୨ : ସାର୍ବଜନୀନ ପ୍ରାଥମିକ ଶିକ୍ଷା**

- ବିକାଶଶୀଳ ଦେଶଗୁଡ଼ିକରେ ପ୍ରତ୍ୟେକ ଚାରିଜଣଙ୍କ ମଧ୍ୟରୁ ଜଣେ ଅଶିକ୍ଷିତ । ସେମାନଙ୍କ ସଂଖ୍ୟା ହାରାହାରି ପ୍ରାୟ ୮୭ କୋଟି ୨୦ ଲକ୍ଷ (ଅକ୍ସଫାମ୍-ୟୁକେ, ଏଜୁକେସନ୍ ନିୟୁ କ୍ୟାମ୍ପେନ୍)
- ୧୦ କୋଟିରୁ ଅଧିକ ଶିଶୁ ବର୍ତ୍ତମାନ ସୁଦ୍ଧା ସ୍କୁଲରେ ପହଞ୍ଚି ପାରିନାହାଁନ୍ତି । (ୟୁନିସେଫ୍)
- ଗରିବ ରାଷ୍ଟ୍ରମାନଙ୍କର ଶତକଡ଼ା ୪୬ ଭାଗ ମହିଳା ପ୍ରାଥମିକ ଶିକ୍ଷାରୁ ବଞ୍ଚିତ (ଆକ୍ସନ ଏଡ୍)
- ବିଶ୍ୱରେ ପ୍ରତ୍ୟେକ ଚାରିଜଣଙ୍କ ମଧ୍ୟରୁ ଜଣେ ବା ତତୋଧିକ ଯୁବକ/ଯୁବତୀ ଲେଖିବା, ପଢ଼ିବା କରିପାରନ୍ତି ନାହିଁ । ଏହା ମଧ୍ୟରୁ ଦୁଇ ଦୃତୀୟାଂଶ ମହିଳା । (ଆକ୍ସନ୍ଏଡ୍)
- ବିଶ୍ୱର ପ୍ରାଥମିକ ଶିକ୍ଷାକୁ ସଂପୂର୍ଣ୍ଣ କରିବା ପାଇଁ ବାର୍ଷିକ ୧ ହଜାର କୋଟି ଅର୍ଥର ଆବଶ୍ୟକତା ରହିଛି । ଆମେରିକାରେ ଏହାର ଦ୍ୱିଗୁଣ ଅର୍ଥ ଆଇସକ୍ରିମ୍ ବାବଦରେ ଖର୍ଚ୍ଚ ହୋଇଥାଏ । (ଆକ୍ସନଏଡ୍)
- ପ୍ରାଥମିକ ଶିକ୍ଷା ସମାପ୍ତ କରିଥିବା ଯୁବକମାନେ ଏଚ୍.ଆଇ.ଭି ଦ୍ୱାରା ସଂକ୍ରମିତ ହେବାର ଆଶଙ୍କା ଶିକ୍ଷା ଗ୍ରହଣ କରିନଥିବା ଯୁବକମାନଙ୍କ ତୁଳନାରେ ୫୦%ରୁ କମ୍ । ସାର୍ବଜନୀନ ପ୍ରାଥମିକ ଶିକ୍ଷା ଦ୍ୱାରା ବାର୍ଷିକ ୭୦,୦୦୦ ନୂଆ ଏଚ୍.ଆଇ.ଭି. ସଂକ୍ରମଣକୁ ରୋକାଯାଇପାରିବ । ଏହା ଫଳରେ ନୂତନ ସଂକ୍ରମଣକୁ ୨୦% କମାଯାଇପାରିବ । (ଅକ୍ସଫାମ୍)

**ଲକ୍ଷ୍ୟ-୩ : ଲିଙ୍ଗଭିତ୍ତିକ ବୈଷମ୍ୟ ଦୂର କରିବା ଓ ମହିଳା ସଶକ୍ତିକରଣ**

- ବିଶ୍ୱରେ ପ୍ରାୟ ୧୩୦ କୋଟି ଲୋକେ ଦାରିଦ୍ର୍ୟ ଓ କ୍ଷୁଧାରେ ବଞ୍ଚିଥାନ୍ତି । ଏଥିମଧ୍ୟରୁ ଶତକଡ଼ା ୭୦ ଭାଗ ମହିଳା । (ୱାଲର୍ଡ ରିଭଲ୍ୟୁସନ୍)
- ବିଶ୍ୱରେ ହେଉଥିବା ମୋଟ କାମର ପ୍ରାୟ ୬୬% ମହିଳାମାନେ କରିଥାନ୍ତି । ମାତ୍ର ପ୍ରତିବଦଳରେ ମହିଳାମାନେ ରୋଜଗାରର କେବଳ ୫% ପାଇଥାନ୍ତି ।
- ଅନୁନ୍ନତ ରାଷ୍ଟ୍ରରେ ଥିବା ସମସ୍ତ ଅଶିକ୍ଷିତମାନଙ୍କ ମଧ୍ୟରୁ ୧୫ରୁ ୨୪ ବର୍ଷ ବୟସ ସୀମାର ମହିଳାଙ୍କ ସଂଖ୍ୟା ପୁରୁଷମାନଙ୍କ ଠାରୁ ଦୁଇଗୁଣ (ୟୁଏନ୍ଏଫ୍ପିଏ)

- ପ୍ରାଥମିକ ଶିକ୍ଷାରୁ ବଞ୍ଚିତ ଶିଶୁମାନଙ୍କ ମଧ୍ୟରୁ ଦୁଇତୃତୀୟାଂଶ ବାଳିକା । ସାରା ବିଶ୍ୱରେ ଥିବା ଅଶିକ୍ଷିତ ପ୍ରାପ୍ତ ବୟସ୍କଙ୍କ ମଧ୍ୟରେ ୭୫% ବା ୮୭.୬ ଲକ୍ଷ ହେଉଛନ୍ତି ମହିଳା ।
- ବିଶ୍ୱର ମୋଟ କାର୍ଯ୍ୟ ସମୟର ଦୁଇ ତୃତୀୟାଂଶ ମହିଳାମାନେ କାମ କରନ୍ତି । ବିଶ୍ୱର ଅର୍ଦ୍ଧାଧିକ ଖାଦ୍ୟ କେବଳ ମହିଳାମାନଙ୍କ ଦ୍ୱାରା ଉତ୍ପାଦିତ ହୋଇଥାଏ । ମହିଳାମାନେ ବିଶ୍ୱର କେବଳ ଶତକଡ଼ା ୧୦ ଭାଗ ଆୟର ଅଧିକାରିଣୀ ଏବଂ ବିଶ୍ୱ ସମ୍ପତ୍ତିର ଶତକଡ଼ା ୧ ଭାଗ ଏମାନଙ୍କ ହକ୍‌ରେ ଯାଇଥାଏ । (ହ୍ୱାଇ ଡେଭେଲପ୍‌ମେଣ୍ଟ ଇଣ୍ଡିକେଟରର୍ସ, ୧୯୯୭, ୱିମେନ୍‌କାଇଣ୍ଡ ୱାର୍ଲଡ ୱାଇଡ୍)

## ଲକ୍ଷ୍ୟ-୪ : ଶିଶୁ ମୃତ୍ୟୁହାର କମାଇବା

- ବିଶ୍ୱରେ ପ୍ରତିବର୍ଷ ୧.୧ କୋଟି ଶିଶୁ ପାଞ୍ଚବର୍ଷ ପୂରଣ କରିବା ପୂର୍ବରୁ ମୃତ୍ୟୁବରଣ କରିଥାଆନ୍ତି । ଘଣ୍ଟାକୁ ହିସାବ ୧୨୦୦ ଜଣ ଶିଶୁ । ଏମାନଙ୍କ ମଧ୍ୟରୁ ଅଧିକାଂଶ ସହଜରେ ପ୍ରତିକାର କରିହେଉଥିବା ବା ଚିକିତ୍ସା କରାଯାଇପାରୁଥିବା ରୋଗର ଶିକାର ହୋଇ ମୃତ୍ୟୁବରଣ କରନ୍ତି । (ୱାଇ ଡୁ ମିଲେନିୟମ୍ ଡେଭେଲପ୍‌ମେଣ୍ଟ ଗୋଲ୍‌ସ୍ ମ୍ୟାଟର)

## ଲକ୍ଷ୍ୟ-୫ : ମାତୃ ସ୍ୱାସ୍ଥ୍ୟରେ ଉନ୍ନତି

- ବାର୍ଷିକ ୫ ଲକ୍ଷ ବା ତତୋଧିକ ମହିଳାମାନେ ଗର୍ଭାବସ୍ଥାରେ ବା ପିଲା ଜନ୍ମକଲାବେଳେ ମୃତ୍ୟୁବରଣ କରିଥାନ୍ତି । ଅର୍ଥାତ୍ ପ୍ରତି ମିନିଟ୍‌ରେ ଜଣେ କରି ମହିଳା ମୃତ୍ୟୁବରଣ କରିଥାନ୍ତି । ଗର୍ଭବତୀ ମହିଳାଙ୍କ ମୃତ୍ୟୁ ବିକାଶଶୀଳ ଦେଶମାନଙ୍କରେ ହିଁ ହୋଇଥାଏ । (ୟୁଏନ୍‌ଏଫ୍‌ପିଏ)
- ବିଶ୍ୱରେ ପ୍ରତି ୧୦୦ ମହିଳାମାନଙ୍କ ମଧ୍ୟରେ ମାତ୍ର ୨୮ ଜଣ ମହିଳା ତାଲିମପ୍ରାପ୍ତ ଧାଇ/ଡାକ୍ତରଖାନାରେ ଶିଶୁ ଜନ୍ମ କରିଥାନ୍ତି । (ଆକ୍‌ସନ୍‌ଏଡ୍)

## ଲକ୍ଷ୍ୟ-୬ : ଏଚ୍.ଆଇ.ଭି/ଏଡ୍‌ସ୍, ମ୍ୟାଲେରିଆ ଓ ଅନ୍ୟାନ୍ୟ ରୋଗର ମୁକାବିଲା

- ବିଶ୍ୱରେ ଦେଖାଯାଇଥିବା ଏଚ୍.ଆଇ.ଭି/ଏଡ୍‌ସ୍ ରୋଗୀମାନଙ୍କ ଯତ୍ନ ଓ ପୁନଃ ଥଇଥାନ ପାଇଁ ବାର୍ଷିକ ୧୦୫୦ କୋଟି ଡଲାର (୪୪୧୦୦କୋଟି) ରହିଅଛି । ୨୦୦୭ ମସିହା ସୁଦ୍ଧା ଏହାର ପରିମାଣ ପ୍ରତିବର୍ଷ ୧୫୦୦ କୋଟି

ଡଲାର (୬୩୦୦୦ କୋଟି ଟଙ୍କା) ହିସାବରେ ବଢ଼ିବାର ସମ୍ଭାବନା ରହିଅଛି ।

- ଆଫ୍ରିକାରେ ପ୍ରତ୍ୟେକ ଦିନ ୬,୫୦୦ ଲୋକେ ଏଚ୍‌ଆଇଭି ଓ ଏଡସ୍ ଦ୍ୱାରା ମୃତ୍ୟୁମୁଖରେ ପଡ଼ିଥାନ୍ତି । ଅନ୍ୟ ପକ୍ଷରେ ୯୫୦୦ ଲୋକେ ଏଚ୍‌ଆଇଭି ଭୂତାଣୁ ଦ୍ୱାରା ନୂତନ ସଂକ୍ରମଣର ଶିକାର ହୋଇଥାନ୍ତି । ତନ୍ମଧ୍ୟରୁ ୧୪୦୦ ନବଜାତ ଶିଶୁ ଜନ୍ମବେଳେ ବା ମା'କ୍ଷୀର ଯୋଗୁଁ ଏଚ୍‌ଆଇଭି ଦ୍ୱାରା ସଂକ୍ରମିତ ହୋଇଥାନ୍ତି । (ୟୁଏନ୍‌ଏଡ୍‌ସ)
- ବର୍ତ୍ତମାନ ଆଫ୍ରିକାରେ ୧ କୋଟି ୧୦ ଲକ୍ଷ ଶିଶୁ ଏଚ୍.ଆଇ.ଭି., ଏଡ୍‌ସ ସଂକ୍ରମଣ ଯୋଗୁଁ ସେମାନଙ୍କ ପିତା, ମାତା ଉଭୟ ବା ତା' ମଧ୍ୟରୁ ଜଣଙ୍କୁ ହରାଇ ଅନାଥ ହୋଇଛନ୍ତି । ୨୦୧୦ ସୁଦ୍ଧା ଏହି ଅନାଥମାନଙ୍କ ସଂଖ୍ୟା ୨ କୋଟିକୁ ବୃଦ୍ଧି ପାଇବାରେ ସମ୍ଭାବନା ରହିଛି । (ୟୁଏନ୍‌ଏଡସ୍/ୟୁନିସେଫ୍)
- ବିଶ୍ୱରେ ପ୍ରତ୍ୟେକ ମିନିଟ୍‌ରେ ଏଡ୍‌ସ୍ ଯୋଗୁଁ ୫ ଜଣ ଲୋକ ମୃତ୍ୟୁବରଣ କରିଥାନ୍ତି । (ରେଡ୍‌ନୋଜ୍ ଡେ)
- ବର୍ତ୍ତମାନ ୩୦ ଲକ୍ଷ ଶିଶୁ ଏଡ୍‌ସ୍ ସହ ସଂଗ୍ରାମ କରୁଥିବା ବେଳେ ବର୍ତ୍ତମାନ ସୁଦ୍ଧା ୪୦ ଲକ୍ଷ ଶିଶୁ ଏହି ମହାମାରୀ ରୋଗରେ ମୃତ୍ୟୁବରଣ କରିଛନ୍ତି ।
- ବିଶ୍ୱ ପରିପ୍ରେକ୍ଷୀରେ ଏ ପର୍ଯ୍ୟନ୍ତ ଏଚ୍.ଆଇ.ଭି/ଏଡ୍‌ସ୍ ଦ୍ୱାରା ୪ କୋଟି ୨୦ ଲକ୍ଷ ଲୋକେ ସଂକ୍ରମିତ ହୋଇଛନ୍ତି । ବିଶ୍ୱର କେତେକ ଦରିଦ୍ରତମ ରାଷ୍ଟ୍ରରେ ଦୈନିକ ପ୍ରାୟ ୮୦୦୦ ବା ତତୋଧିକ ଲୋକେ ନୂଆକରି ଏଚ୍.ଆଇ.ଭି/ଏଡ୍‌ସ୍ ଦ୍ୱାରା ସଂକ୍ରମିତ ହୋଇଥାନ୍ତି । (ଅକ୍ସଫାମ୍)
- ବିଶ୍ୱ ସ୍ତରରେ ପ୍ରତ୍ୟେକ ୧୦୦ ଲୋକଙ୍କ ମଧ୍ୟରୁ ଜଣେ ଏଚ୍‌ଆଇଭି ପଜିଟିଭ୍, ଏଚ୍‌ଆଇଭି ଆକ୍ରାନ୍ତ ଲୋକମାନଙ୍କ ମଧ୍ୟରୁ ଏକ ତୃତୀୟାଂଶ ହେଉଛନ୍ତି ୧୫ରୁ ୨୪ ବର୍ଷ ବୟସ ସୀମାର । (ଆକ୍ସନ୍‌ଏଡ୍, ୟୁକେ)
- ବିଶ୍ୱର ଶତକଡ଼ା ୪୦ ଭାଗ ଲୋକ (ମୁଖ୍ୟତଃ ଗରିବ ରାଷ୍ଟ୍ରରେ) ମ୍ୟାଲେରିଆ ଦ୍ୱାରା ପ୍ରଭାବିତ ହୋଇଥାନ୍ତି ।
- ମ୍ୟାଲେରିଆର ପ୍ରଭାବରେ ପ୍ରତ୍ୟେକ ବର୍ଷ ୩୦ କୋଟି ଲୋକେ ଅସୁସ୍ଥତାରେ ପଡ଼ିଥିବା ବେଳେ ଏଥି ମଧ୍ୟରୁ ବାର୍ଷିକ ୧୦ ଲକ୍ଷ ଲୋକେ ମୃତ୍ୟୁବରଣ କରିଥାନ୍ତି ।

- ୨୦୦୨ ମସିହା ସୁଦ୍ଧା ଯକ୍ଷ୍ମା ଯୋଗୁଁ ୨୦ ଲକ୍ଷ ଲୋକ ମୃତ୍ୟୁବରଣ କରିଛନ୍ତି ।
- ପ୍ରତ୍ୟେକ ସେକେଣ୍ଡରେ ବିଶ୍ୱରେ କେହି ଜଣେ ଯକ୍ଷ୍ମା (ରୋଗକାରଣ ଜୀବାଣୁ) ଦ୍ୱାରା ସଂକ୍ରମିତ ହୋଇଥାନ୍ତି ।

## ଲକ୍ଷ୍ୟ-୭ : ଦୀର୍ଘକାଳୀନ ଭିତ୍ତିରେ ପରିବେଶ ବଜାୟ ରହିବାକୁ ନିର୍ଧାର୍ଯ୍ୟ କରିବା

- ବର୍ତ୍ତମାନ ବିଶ୍ୱରେ ୨୫୦ କୋଟି ଲୋକେ ପରିମଳ ବ୍ୟବସ୍ଥାର ବହୁତ ଦୂରରେ ଥିବାବେଳେ, ୧୨୦ କୋଟି ଲୋକ ସ୍ୱଚ୍ଛ ଶୁଦ୍ଧ ପାନୀୟ ଜଳ ସୁବିଧାରୁ ବଞ୍ଚିତ ଅଛନ୍ତି । (ହ୍ୱାଇ ଡୁ ଦ ମିଲେନିୟମ୍ ଡେଭେଲପ୍‌ମେଣ୍ଟ୍ ଗୋଲ୍‌ସ୍ ମ୍ୟାଟର୍ ?)
- ବିଶ୍ୱ ସମୁଦାୟର ଏକ ତୃତୀୟାଂଶ ଲୋକେ ନିରାପଦ ପାନୀୟ ଜଳରୁ ବଞ୍ଚିତ ।
- ୨୦୦୨ ମସିହା ସୁଦ୍ଧା ଏସିଆ ମହାଦେଶର ଏକ ତୃତୀୟାଂଶ ଲୋକ ପିଇବା ପାଣିର ସୁବିଧା ପାଇପାରୁ ନାହାନ୍ତି ।
- ୨୦୦୨ ମସିହା ସୁଦ୍ଧା ଅଧାରୁ କମ୍ ଅଞ୍ଚଳର ଲୋକେ ପରିମଳ ବ୍ୟବସ୍ଥାର ସୁଯୋଗ ପାଇଛନ୍ତି । ୨୬୦ କୋଟି ଲୋକଙ୍କ ମଧ୍ୟରୁ ପାଖାପାଖି ୨୦୦ କୋଟି ଲୋକେ ଯେଉଁମାନେ କି ବିଶ୍ୱର ସବୁଠାରୁ ଅପହଞ୍ଚ ଜାଗାରେ ରହନ୍ତି ଓ ଏମାନଙ୍କ ପାଖରେ ଏହି ସୁବିଧା ପହଞ୍ଚିପାରି ନାହିଁ ।
- ୨୦୦୨ ମସିହା ସୁଦ୍ଧା ସହରାଞ୍ଚଳରେ ଶତକଡ଼ା ୭୬ ଭାଗ ଲୋକଙ୍କ ପାଖରେ ପରିମଳ ବ୍ୟବସ୍ଥା ପହଞ୍ଚି ସାରିଥିବା ବେଳେ ଗ୍ରାମାଞ୍ଚଳରେ କେବଳ ଶତକଡ଼ା ୩୨ ଭାଗ ଲୋକଙ୍କ ପାଖରେ ପହଞ୍ଚି ପାରିଛି ।
- ୧୯୯୦ ମସିହାର ତଥ୍ୟରୁ ଜଣାଯାଏ ଯେ ଚୀନ୍ ଦେଶ ୧୦୦% ପରିମଳ ବ୍ୟବସ୍ଥା ହାସଲ କରିସାରିଛି ।
- ସ୍ୱଚ୍ଛ ପାନୀୟ ଜଳ ଓ ପରିମଳ ବ୍ୟବସ୍ଥାକୁ ସୁଦୃଢ଼ କରିବା ପାଇଁ ବାର୍ଷିକ ୮୦୦ କୋଟି ଡଲାରର ଆବଶ୍ୟକତା ରହିଅଛି ।
- ପାନୀୟ ଜଳରେ ଅର୍ଥନିବେଶର ଅର୍ଥ ଦରିଦ୍ର ହ୍ରାସ ପାଇଁ ଏକ ସୁନ୍ଦର ଓ ସରଳ ସୁଯୋଗ ।
- ଗରିବ ରାଷ୍ଟ୍ରରେ ପାନୀୟ ଜଳ ପାଇଁ ୧ ଡଲାର ଅର୍ଥ ନିବେଶ କଲେ ୬ ଡଲାରର ସୁଫଳ ମିଳିଥାଏ । ଯଥା ଉତ୍ତମ ସ୍ୱାସ୍ଥ୍ୟ, ଶିକ୍ଷା, କୃଷିରେ ଉନ୍ନତି ଓ ଆମଦାନୀ ।

## ଲକ୍ଷ୍ୟ-୮ : ବିକାଶ ପାଇଁ ବିଶ୍ୱସ୍ତରୀୟ ସହଭାଗିତା

- ମିଳିତ ଜାତିସଂଘ କରିଥିବା ଏକ ଆକଳନରୁ ଜଣାପଡ଼େ ଅନୁଚିତ୍ ବାଣିଜ୍ୟ (ଯାହା ପ୍ରାୟ ୨୮୦୦ ହଜାର କୋଟି ଟଙ୍କା) ବିଶ୍ୱର ଅଧିକାଂଶ ଗରିବ ରାଷ୍ଟ୍ରମାନଙ୍କ ଭାଗ୍ୟ ନିର୍ଦ୍ଧାରଣ କରିଥାଏ । ଯଦି ଏହି ବୃହତ ପରିମାଣ ଅର୍ଥରୁ ୦.୦୧କୁ ସଞ୍ଚୟ କରାଯାଇ ପାରନ୍ତା ତେବେ ୩୦ କୋଟି ଲୋକଙ୍କ ଦୃଷ୍ଟିଶକ୍ତି ଫେରାଇ ହୁଅନ୍ତା । (ଖ୍ରୀଷ୍ଟିଆନ୍ ଏଡ୍)
- ବିଶ୍ୱରେ ପ୍ରତ୍ୟେକ ମିନିଟ୍‌ରେ ୪୦ କୋଟି ଟଙ୍କାର ବାଣିଜ୍ୟ ହୋଇଥାଏ । ଏହି ବାଣିଜ୍ୟର ଶତକଡ଼ା ୭୦ ଭାଗ ବହୁରାଷ୍ଟ୍ରୀୟ ସଂସ୍ଥା ଦ୍ୱାରା ପରିଚାଳିତ ହୋଇଥାଏ । (ଖ୍ରୀଷ୍ଟିଆନ୍ ଏଡ୍)
- ୪୯ ଗୋଟି ରାଷ୍ଟ୍ରର ଜନସଂଖ୍ୟା ବିଶ୍ୱର ସମୁଦାୟ ଜନସଂଖ୍ୟାର ପ୍ରାୟତଃ ଶତକଡ଼ା ୧୦ ଭାଗ ହୋଇଥିଲେ ମଧ ଏମାନେ ବିଶ୍ୱ ବାଣିଜ୍ୟ କାରବାରରେ କେବଳ ୦.୪ ଶତକଡ଼ାର ଭାଗୀଦାର ଅଟନ୍ତି । (ଖ୍ରୀଷ୍ଟିଆନ୍ ଏଡ୍)
- ଅଧିକତର ଗରିବ ରାଷ୍ଟ୍ରମାନଙ୍କର ରପ୍ତାନୀର ମୂଲ୍ୟାଙ୍କନ ୧୫୦ ବର୍ଷ ତଳର ପୁରୁଣା ମୂଲ୍ୟ ଅନୁଯାୟୀ ହୋଇଥାଏ । (ଖ୍ରୀଷ୍ଟିଆନ୍ ଏଡ୍)
- ଧନୀ ରାଷ୍ଟ୍ରମାନେ ବିଶ୍ୱ ବାଣିଜ୍ୟରେ ବାର୍ଷିକ ୫,୬୭,୨୦୦ କୋଟି ଲାଭ କରିଥାନ୍ତି । କେବଳ ଏହା ତୁଳନାରେ ଆଫ୍ରିକା ୧୦୪୦ କୋଟି ବାର୍ଷିକ କ୍ଷତି ସହିଥାଏ । (ଅକ୍ସଫାମ୍)
- ଧନୀ ରାଷ୍ଟ୍ରମାନେ ୪,୦୦,୦୦୦ କୋଟି ଧନ ରାଶି ବଜାରୀକରଣ ଯଥା ପଣ୍ୟଶୁଳ୍କ, କୋଟା, ରିହାତି ଆଦି ପାଇଁ ଖର୍ଚ୍ଚ କରିଥାନ୍ତି । ଏହି ଅର୍ଥର ସାଧାଣତଃ ଅନୁଦାନ ଆକାରରେ ଗରିବ ରାଷ୍ଟ୍ରମାନଙ୍କୁ ଦିଆଯାଉଥିବା ଅର୍ଥର ଦୁଇଗୁଣ । (ଖ୍ରୀଷ୍ଟିଆନ୍ ଏଡ୍)
- ବାର୍ଷିକ ୩୪୬,୪୦୦ କୋଟି କୃଷକମାନଙ୍କ ଋଣର ରିହାତି ଆକାରରେ ମିଳିଥିବା ବେଳେ ମାତ୍ର ୨୦,୦୦୦ କୋଟି ବିଶ୍ୱର ସମସ୍ତ ଶୁଦ୍ଧ ପାନୀୟ ଜଳ ଓ ପରିମଳ କାର୍ଯ୍ୟ ପାଇଁ ଖର୍ଚ୍ଚ ହୋଇପାରନ୍ତା ।
- ଏକ ଆକଳନରୁ ଜଣାପଡ଼େ କଫି ଶ୍ରମିକମାନେ ଏକ କିଲୋଗ୍ରାମ କଫି ପ୍ରତିବଦଳରେ ୪୦ ଟଙ୍କା ପାଇଥିବାବେଳେ ଗ୍ରାହକଙ୍କୁ ଏହା ବଦଳରେ ୬୦୦ ଟଙ୍କା ଦେବାକୁ ପଡ଼ିଥାଏ । (ଅକ୍ସଫାମ୍)

- ଏଡ୍ ପାଇଁ ପ୍ରତିଶ୍ରୁତିବଦ୍ଧ ଧନୀ ରାଷ୍ଟ୍ରମାନଙ୍କର ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇଛି, ଯଥା : ଉତ୍ତମ, ଖରାପ ବା ଅତି ଖରାପ ।
- ଋଣ- ବିଶ୍ୱରେ ପ୍ରତ୍ୟେକ ବର୍ଷ ୭୦ ଲକ୍ଷ ଶିଶୁ ଋଣବୋଝ ନେଇ ମୃତ୍ୟୁବରଣ କରିଥା'ନ୍ତି ।
- ପ୍ରତ୍ୟେକ ଧନୀ ରାଷ୍ଟ୍ରରେ ଏକ ପାଉଣ୍ଡ୍ ବା ୮୦ ଟଙ୍କା ଗ୍ରାଣ୍ଟ୍ ବଦଳରେ ପ୍ରାୟ ୧୩ ପାଉଣ୍ଡ୍ ବା ୧୦୪୦ ଟଙ୍କା ପରିଶୋଧ କରିବାକୁ ପଡ଼ିଥାଏ । (ୱାର୍ଲଡ୍ ହେଲ୍ଥ ରିପୋର୍ଟ-୨୦୦୦)
- ସହସ୍ରାବ୍ଦରେ ଥିବା ସମସ୍ତ ଲକ୍ଷ୍ୟଗୁଡ଼ିକୁ ୨୦୧୫ ସୁଦ୍ଧା ପୂରଣ କରିବା, ତା' ସହିତ ଦାରିଦ୍ର୍ୟକୁ ଅଧାକୁ କମାଇବାକୁ ହେଲେ ବର୍ତ୍ତମାନ ବିଶ୍ୱରେ ନେଇଥିବା ଗରିବ ରାଷ୍ଟ୍ରମାନଙ୍କର ସମସ୍ତ ଋଣକୁ ଛାଡ଼ କରିବାକୁ ହେବ । (ଜୁବ୍‌ଲି ଡେଟ୍ କ୍ୟାମ୍ପେନ୍)
- ସମୁଦାୟ ଋଣର ୮୫% ଭାଗ ନେଇଥିବା ଗରିବ ରାଷ୍ଟ୍ରମାନଙ୍କର ଏପର୍ଯ୍ୟନ୍ତ ଋଣ ଛାଡ଼ କରାଯାଇ ନାହିଁ । (କାଫୋର୍ଡ)
- ଋଣ ପରିଶୋଧ ପାଇଁ ଯେତିକି ଅର୍ଥ ଖର୍ଚ୍ଚ କରାଯାଏ, ସେତିକି ଅର୍ଥରେ ୧୩୦ କୋଟି ଲୋକେ ପାଣି ପାଇ ପାରିବେ । (ଡବ୍ଲୁଡିଏମ୍)



# 'କଥା ରଖିବା ସରକାର' ଅଭିଯାନ

ଜାତୀୟ ସ୍ତରରେ ଯେପରି ୱାଦା ନା ତୋଡ଼ୋ ଅଭିଯାନ ଚାଲିଛି, ସେହିପରି ଓଡ଼ିଶାରେ ଏହାକୁ ଆଧାର କରି ୨୦୦୫-୨୦୦୬ରୁ ଏକ ଅଭିଯାନ ଆରମ୍ଭ କରାଯାଇଛି ଯାହାର ନାଁ ରଖାଯାଇଛି 'କଥା ରଖିବା ସରକାର' ଅଭିଯାନ । ଏହା ଏକ ରାଜ୍ୟସ୍ତରୀୟ ସଂଗଠନ ଓ ଏହାର ଲକ୍ଷ୍ୟ ଓଡ଼ିଶାରେ ସହସ୍ରାବ୍ଦର ପ୍ରତିଶ୍ରୁତି କିପରି ବାସ୍ତବ ରୂପ ନେବ ସେ ଦିଗରେ କାର୍ଯ୍ୟ କରିବା । ଏହି ସଂଗଠନରେ କିଛି ରାଜ୍ୟସ୍ତରୀୟ ସଂଗଠନ, ଆନ୍ତର୍ଜାତୀୟ ସଂଗଠନ ଏକାଠି ହୋଇ ସହସ୍ରାବ୍ଦର ବିକାଶ ଲକ୍ଷ୍ୟ, ସାର୍କ ବିକାଶ ଲକ୍ଷ୍ୟ, ଜାତୀୟ ବିକାଶ ଲକ୍ଷ୍ୟ, ୟୁପିଏ ସରକାରଙ୍କର ସର୍ବନିମ୍ନ ସାଧାରଣ କାର୍ଯ୍ୟକ୍ରମ ଇତ୍ୟାଦି ସଂପର୍କରେ ସଚେତନତା ସୃଷ୍ଟି କରିବା ଏବଂ ସରକାରମାନେ ଯେପରି ଏ ଲକ୍ଷ୍ୟଗୁଡ଼ିକ ହାସଲ ଦିଗରେ ଆଗଭର ହୁଅନ୍ତି ସେଥିପାଇଁ କାର୍ଯ୍ୟ କରିବା । ଆପାତତଃ 'କଥା ରଖିବା ସରକାର' ଅଭିଯାନ ଦାରିଦ୍ର୍ୟ, ଏଚ୍.ଆଇ.ଭି./ଏଡସ୍, ଜମିର ଅଧିକାର, ପିଇବା ପାଣି- ଏହି ଚାରୋଟି ମୁଖ୍ୟ ପ୍ରସଙ୍ଗକୁ ନେଇ ପ୍ରାଥମିକ ସ୍ତରରେ କାମ କରିବ ବୋଲି ସ୍ଥିର କରାଯାଇଛି । ଏହା ସ୍ୱେଚ୍ଛାସେବୀ ସଂସ୍ଥା, ସାମାଜିକ ଅନୁଷ୍ଠାନ, ଗୋଷ୍ଠୀ ସଂଗଠନ, ଛାତ୍ରଛାତ୍ରୀ ଓ ବାଣିଜ୍ୟିକ ଅନୁଷ୍ଠାନମାନଙ୍କୁ ନେଇ ସହସ୍ରାବ୍ଦର ଲକ୍ଷ୍ୟ ପୂରଣ ପାଇଁ କାର୍ଯ୍ୟ କରିବ । ସରକାରଙ୍କୁ ତାଙ୍କର ପ୍ରତିଶ୍ରୁତିଗୁଡ଼ିକ ପାଳନ କରିବା ପାଇଁ ମନେ ପକାଇ ଦେବା ସଂଗେ ସଂଗେ, ଏଗୁଡ଼ିକର ପାଳନ କ୍ଷେତ୍ରରେ ଏକ ସହଯୋଗମୂଳକ ଭୂମିକା ତୁଲାଇବ । କାରଣ ଏହି ଅଭିଯାନ ବିଶ୍ୱାସ କରେ ଯେ ଏହି ସହସ୍ରାବ୍ଦର ଲକ୍ଷ୍ୟଗୁଡ଼ିକ ହାସଲ କରିବା ସହଜ ବ୍ୟାପାର ନୁହେଁ, ଏବଂ ଏଗୁଡ଼ିକୁ ହାସଲ କରିବା କେବଳ ସରକାରଙ୍କର ଦାୟିତ୍ୱ ନୁହେଁ, ପ୍ରତ୍ୟେକ ଓଡ଼ିଆଙ୍କର ମଧ୍ୟ ଦାୟ ।

'କଥା ରଖିବା ସରକାର' ଅଭିଯାନ ରାଜ୍ୟର ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ଛାତ୍ର ସଂଗଠନ, ଶ୍ରମ ସଂଗଠନ, ବୁଦ୍ଧିଜୀବୀ, ଗଣମାଧ୍ୟମ, ଜନପ୍ରତିନିଧି ଇତ୍ୟାଦିଙ୍କୁ ସାମିଲ କରି ସହସ୍ରାବ୍ଦର ଲକ୍ଷ୍ୟ ଓ ତତ୍‌ସହିତ  ସରକାର ଦେଇଥିବା ପ୍ରତିଶ୍ରୁତିଗୁଡ଼ିକୁ କାର୍ଯ୍ୟକାରୀ କରିବା ପାଇଁ ଏକ ମଜବୁତ ଆନ୍ଦୋଳନ ଗଢ଼ି ତୋଳିବା ପାଇଁ ପ୍ରତିଶ୍ରୁତିବଦ୍ଧ । ଏହି ଲକ୍ଷ୍ୟଗୁଡ଼ିକର ମୂଳ ଆଧାର ହେଉଛି ଆଜି ପର୍ଯ୍ୟନ୍ତ କରିଥିବା କାର୍ଯ୍ୟ, କାର୍ଯ୍ୟ ପ୍ରଣାଳୀ, ବାଧା ବିଘ୍ନ ଓ ଏହା ମଧ୍ୟରେ ଥିବା ଅସଂଗତ ସଂପର୍କରେ ତଥ୍ୟଭିତ୍ତିକ ଦଲିଲ ପ୍ରସ୍ତୁତ କରି ସେହି ଭିତ୍ତିରେ କାର୍ଯ୍ୟ କରିବା ।






**କଥା ରଖିବା ସରକାର ଅଭିଯାନ**
ମାର୍ଫତ: ଆର୍‌ସିଡିସି ସେଣ୍ଟର୍ ଫର୍ ୱାଟର୍ ଫର୍ ଲାଇଫ୍
୪୨୪, ଶହୀଦ ନଗର, ଭୁବନେଶ୍ୱର-୭୫୧ ୦୦୭, ଓଡ଼ିଶା
ଦୂରଭାଷ: +୯୧ ୬୭୪ ୨୫୪୭୫୮୫, ୨୫୪୭୮୯୭
E-mail:krsorissa@rediffmail.com/krsorissa@gmail.com